# ଅହିଂସାର ଅଧିନାତ



ଶ୍ରୀ କାଶୀନାଥ ଷଡ଼ଙ୍ଗୀ.

# ଅହିଂସାର ଅର୍ଥନୀତି

## (ECONOMICS OF NON-VIOLENCE.)


ଲେଖକ :—

ଶ୍ରୀ କାଶୀନାଥ ଷଡ଼ଙ୍ଗୀ, ବି.ଏ.

ବେସିକ୍ ଟ୍ରେନିଂ ସ୍କୁଲ, ଅନୁଗୋଳ



ପ୍ରଥମ ସଂସ୍କରଣ

୧୯୫୩

ପ୍ରକାଶକ

ମ୍ୟାନେଜର କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ—୨

ମୂଲ୍ୟ ଟ ୨ ।

କଟକ ମୁଦ୍ରଣୀ ଯନ୍ତ୍ର

# ଅର୍ଘ୍ୟ

ଉତ୍କଳର ସୁପରିଚିତ

ନୀରବ, ଗଠନମୂଳକ କର୍ମୀ

**ଆଚାର୍ଯ୍ୟ ହରିହର ଦାଶଙ୍କୁ**

ଭକ୍ତି-ନିବେଦନ

ଗୁଣମୁଗ୍ଧ

**ଲେଖକ**

# ଲେଖକର ପଦେ

ସେବାଗ୍ରାମରେ ଥିଲାବେଳେ ଗାନ୍ଧିଜୀଙ୍କ ପରିକଳ୍ପିତ ଗ୍ରାମ୍ୟ ଅର୍ଥନୀତିର ମୌଳିକ ତଥ୍ୟଗୁଡ଼ିକ ମୋର ପ୍ରଦେଶବାସୀଙ୍କ ଆଗରେ ବାଢ଼ିବାର କଳ୍ପନା କରିଥିଲି । ବିଶିଷ୍ଟ ଗାନ୍ଧୀ-ଅର୍ଥନୀତି-ବିତ୍ ଡକ୍ଟର ଜେ. ସି. କୁମାରପ୍ପାଙ୍କର ପୁସ୍ତକ ପାଠ ଓ ଅଧ୍ୟାପନାର ସୁଯୋଗ ମୋତେ ଏ ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲା । ଆଜି ମୋର ସେ ଲକ୍ଷ୍ୟ କେତେକାଂଶରେ ପୂର୍ଣ୍ଣ ହୋଇଛି । ଡକ୍ଟର କୁମାରପ୍ପାଙ୍କ ପ୍ରତି ମୋର ପ୍ରାଣ ଆଜି କୃତଜ୍ଞତାରେ ଭରି ଉଠୁଛି ।

**ବାପୁଜୀ କହିଥିଲେ**—"ମୋ ମତରେ ଖାଲି ଭାରତ କାହିଁକି, ସମଗ୍ର ପୃଥିବୀର ଆର୍ଥିକ ପରିସ୍ଥିତି ଏପରି ହେବ, ଯେଉଁଥିରେ କି କେହି ଖାଇବା ବିନା, ପିନ୍ଧିବା ବିନା କଷ୍ଟ ପାଇବେ ନାହିଁ । ଏହାର ଅର୍ଥ ସମସ୍ତେ ଯଥେଷ୍ଟ କାମ ପାଇବେ ଓ କାମ କରି ନିଜର ଅଭାବ ମେଣ୍ଟାଇ ପାରିବେ । ଏହି ଆଦର୍ଶ ସହଜରେ ମିଳିପାରିବ, ଯଦି ସାଧାରଣ ଲୋକଙ୍କ ହାତରେ ଜୀବନଧାରଣର ପ୍ରଧାନ ଉତ୍ପାଦନର ଅଧିକାର ରହିବ । ମୁଷ୍ଟିମେୟ ଲୋକ ଉତ୍ପାଦନର ଉପାୟକୁ ଅକ୍ତିଆର କରି ଜନସାଧାରଣଙ୍କୁ ଶୋଷଣ କରିବାର ସୁବିଧା ପାଇବେ ନାହିଁ ।"

ଯେତେବେଳେ ବାପୁଜୀଙ୍କର ଏହି ମହତ୍ ଲକ୍ଷ୍ୟ ଯଥାର୍ଥ ରୂପରେଖ ନେବ, ଦେଶରେ ଶ୍ରେଣୀ ଓ ଶୋଷଣହୀନ ସମାଜ ଗଢ଼ିଉଠିବ—ସେତେବେଳେ ମୁଁ ମୋର ଶ୍ରମ ସାର୍ଥକ ହେଲା ବୋଲି ବିଚାରିବି । ଜୟହିନ୍ଦ ।

ଅନୁଗୋଳ,
ସ୍ନାନ ପୂର୍ଣ୍ଣିମା, ୧୯୫୨ ମସିହା

ବିନୀତ
**ଲେଖକ**

# ସୂଚୀ

# ଅହିଂସାର ଅର୍ଥନୀତି

## ଅର୍ଥନୀତି କଅଣ ?

ଦୈନନ୍ଦିନ ବ୍ୟାବହାରିକ ଜୀବନରେ ମାନବଜାତିକୁ ବିଚାର କରିବା ହେଲା ଅର୍ଥଶାସ୍ତ୍ରର କାର୍ଯ୍ୟ । ଅର୍ଥ-ବିଜ୍ଞାନ ଆମ ଜୀବନ-ପଥରୁ ବିଭିନ୍ନ ଅଭାବ ଅସୁବିଧା ଦୂର କରି ସ୍ୱଚ୍ଛନ୍ଦ ଜୀବନ-ଯାପନ କରିବାରେ ଆମକୁ ସାହାଯ୍ୟ କରେ । ଏହି ଜ୍ଞାନ ଲାଭକରି ଆମେ ଆମର ସୀମିତ ସମ୍ବଳ, ଉପାୟ ଓ ସମୟ ମଧ୍ୟରେ ଜୀବନନିର୍ବାହ କରିବାକୁ ସମର୍ଥ ହେଉ । ଏହା ଜୀବନ-ପରିଚାଳନା ରୂପକ ବିଜ୍ଞାନ ଓ ଶାସ୍ତ୍ର ଉପରେ ପ୍ରତିଷ୍ଠିତ । ତେଣୁ ବୈଷୟିକ କ୍ଷେତ୍ରରେ ଜୀବନ-ପରିଚାଳନାର ଶାସ୍ତ୍ର ହିଁ ଅର୍ଥଶାସ୍ତ୍ର ।

ଗୋଟିଏ ଘର ଚଳାଇବାରେ ଯେପରି ଅର୍ଥଶାସ୍ତ୍ର-ଜ୍ଞାନ ସାହାଯ୍ୟ କରେ, ସେହିପରି ଗୋଟିଏ ରାଷ୍ଟ୍ର-ପରିଚାଳନାରେ ମଧ୍ୟ ଏହା ଆମକୁ କମ୍ ସାହାଯ୍ୟ କରେ ନାହି । ଘର ଚଳାଇବାର ଶାସ୍ତ୍ରକୁ ପାରିବାରିକ ଅର୍ଥଶାସ୍ତ୍ର (Domestic Economy) ଓ ରାଷ୍ଟ୍ର ପରିଚାଳନାର ଶାସ୍ତ୍ରକୁ ରାଜନୈତିକ ଅର୍ଥଶାସ୍ତ୍ର (Political

Economy) କୁହାଯାଏ । ସରକାର ଓ ସାଧାରଣ କାର୍ଯ୍ୟ ପରିଚାଳନାର କଳା ଓ ବିଜ୍ଞାନ ହିଁ ରାଜନୀତି । ତେଣୁ ରାଜନୀତି ଓ ଅର୍ଥନୀତି ମଧ୍ୟରେ ନିବିଡ଼ ସମ୍ପର୍କ ବିଦ୍ୟମାନ । ଅର୍ଥନୀତି ରାଜନୀତିଜ୍ଞଙ୍କୁ ପ୍ରତି ପଦେ ପଦେ ସାହାଯ୍ୟ କରେ । ରାଜନୀତି ଓ ଅର୍ଥନୀତିକୁ ଭିନ୍ନ ବିଷୟ ବୋଲି ନ ଭାବି ପରସ୍ପର ପରସ୍ପରର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ଗ୍ରହଣ କଲେ ବରଂ ଠିକ୍ ହେବ । ରାଷ୍ଟ୍ର-ପରିଚାଳନା କ୍ଷେତ୍ରରେ ଅର୍ଥନୀତି ଓ ରାଜନୀତି-ଗତ ସମସ୍ୟା ବାସ୍ତବିକ୍ ଏକ ଓ ଅଭିନ୍ନ ।

## ପାଶ୍ଚାତ୍ୟ (ପ୍ରଚଳିତ) ଅର୍ଥନୀତି

ମନୁଷ୍ୟ ଏକ ସାମାଜିକ ଜୀବ । ତେଣୁ ଜୀବନ-ପରିଚାଳନା କ୍ଷେତ୍ରରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସାହାଯ୍ୟ ସହଯୋଗ ରହିବା ନିତାନ୍ତ ଆବଶ୍ୟକ । ଏହାଦ୍ୱାରା ହିଁ ମାନବସମାଜରେ ଆଦର୍ଶ ଜୀବନ ଯାପନ ସମ୍ଭବପର । କିନ୍ତୁ ଆଜିକାଲିର ଅର୍ଥନୈତିକ ବ୍ୟବସ୍ଥା ଅନୁସାରେ ମନୁଷ୍ୟ ମନୁଷ୍ୟ ଓ ଜାତି ଜାତି ମଧ୍ୟରେ ସହଯୋଗ ପରିବର୍ତ୍ତେ ଦ୍ୱନ୍ଦ୍ୱଭାବ ଅଧିକ ମାତ୍ରାରେ ସ୍ଥାନ ପାଉଛି । ଫଳରେ ସାମାଜିକ ଜୀବନ ଆସ୍ତେ ଆସ୍ତେ କଳଙ୍କିତ ଓ କଳୁଷିତ ହୋଇ ଉଠିଲାଣି । ପାଶ୍ଚାତ୍ୟ ଅର୍ଥନୈତିକ ବ୍ୟବସ୍ଥା ଅନୁସାରେ ମନୁଷ୍ୟ ତାର ପଡ଼ୋଶୀର କଥା ଟିକିଏ ନ ଭାବି ନିଜେ କିପରି ବଞ୍ଚି ରହିବ ସେଥିପାଇଁ ସର୍ବଦା ବ୍ୟସ୍ତ । ଫଳରେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସୁସ୍ଥ ସହଯୋଗ ପରିବର୍ତ୍ତେ ଏକ ଅବାଞ୍ଛନୀୟ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହୋଇଅଛି । ଏହାଦ୍ୱାରା ସମାଜର ବାୟୁମଣ୍ଡଳକୁ ଏକ ତିକ୍ତ ନୈରାଶ୍ୟଭାବ ଆଚ୍ଛନ୍ନ କରି ରଖିଅଛି । ମନୁଷ୍ୟସମାଜର ସମୂହ କଲ୍ୟାଣ କଥା ଚିନ୍ତା

ନ କରି କେବଳ ଆତ୍ମ-ସର୍ବସ୍ୱ ହୋଇ ଉଠିଅଛି । ଏହାର ଅବଶ୍ୟମ୍ଭାବୀ ପରିଣତି ସ୍ୱରୂପ ଆମ ଆମ ମଧ୍ୟରେ ନାନା ପ୍ରକାର ଫାଙ୍କ୍ ଫରକ ଦେଖାଦେଇଛି, ସାମାଜିକ ଜୀବନ-ପ୍ରବାହ ଅତି ନିମ୍ନ ସ୍ତରକୁ ଖସି ଆସିଅଛି ଓ ଜାତୀୟ ଏକତା କେବଳ କଥାର କଥା ହୋଇ ରହିଛି ।

ଶସ୍ତା ଦରରେ ଜିନିଷ କିଣି ଚଢ଼ା ଦରରେ ବିକ୍ରୟ କରିବା ପାଶ୍ଚାତ୍ୟ ଅର୍ଥ-ବିଜ୍ଞାନର ମୂଳ ନୀତି । ତେଣୁ ପାଶ୍ଚାତ୍ୟ ଅର୍ଥନୀତି ହେଲା ଶୋଷଣର ଅର୍ଥନୀତି । ପ୍ରାକୃତିକ ସମ୍ପଦ ବୃଦ୍ଧି ନ କରି ଯେ କୌଣସି ଉପାୟରେ କେବଳ ଅନ୍ୟଠାରୁ ଧନ ଆଣି ନିଜସ୍ୱ କରିବାରେ ଏହି ଅର୍ଥନୀତି ପର୍ଯ୍ୟବସିତ । ଫଳରେ ଆଜି ମନୁଷ୍ୟ କେବଳ ଆତ୍ମକେନ୍ଦ୍ରିକ ପ୍ରଚେଷ୍ଟାରେ ଆବଦ୍ଧ ।

ପ୍ରଚଳିତ ଅର୍ଥନୀତି ପ୍ରକୃତି-ନିୟମର ବିରୁଦ୍ଧାଚରଣ କରୁଅଛି । ଲୋକ ସାଧାରଣଙ୍କର ପ୍ରକୃତ ଚାହିଦା ପ୍ରତି ଦୃଷ୍ଟି ନ ଦେଇ ଏହା ବହୁ-ଉତ୍ପାଦନ-ନୀତି (Principle of Mass Production)ର ପକ୍ଷପାତୀ । ଉତ୍ପାଦନ ପରେ ନାନା ପ୍ରକାର କଳବଳ ପ୍ରୟୋଗ ଦ୍ୱାରା ଲୋକଙ୍କ ମଧ୍ୟରେ ସେହି ଜିନିଷ ପ୍ରତି ଚାହିଦା ସୃଷ୍ଟି କରାଯାଉଅଛି । ଫଳରେ ଚାହିଦା ଦୃଷ୍ଟିରୁ ଉତ୍ପାଦନ କରା ନ ଯାଇ ଉତ୍ପାଦନ ଦୃଷ୍ଟିରୁ ଚାହିଦା ସୃଷ୍ଟି କରାଯାଉଅଛି । କିନ୍ତୁ ଏହା ପ୍ରକୃତିର ନିୟମ ନୁହେଁ । ଏହା ଏକ କୃତ୍ରିମ ଅର୍ଥନୀତି । ଏହି ଅର୍ଥନୀତି ଲୋକସାଧାରଣଙ୍କର ଅଭାବ ଧନକୁ ଧନ ବୃଦ୍ଧି କରିବାରେ ଲାଗିଅଛି । ଫଳରେ ସାମାଜିକ ଜୀବନ ଜଟିଳରୁ ଜଟିଳତର ହେବାରେ ଲାଗିଛି ଓ ଲୋକମାନଙ୍କ ମଧ୍ୟରୁ ଅଳ୍ପ-ସନ୍ତୋଷ-ଗୁଣ ଲୋପ ପାଇଗଲାଣି ।

କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥା ଏହି ବହୁ-ଉତ୍ପାଦନ ପାଇଁ ଦାୟୀ । କାରଣ ବଡ଼ ବଡ଼ କଳକାରଖାନାରୁ ଯଥାସମ୍ଭବ ଅଧିକ ଉତ୍ପାଦନ କରିବାରେ ହିଁ କଳମାଲିକର ଲାଭ । କିନ୍ତୁ କଳର ଉତ୍ପାଦିକା ଶକ୍ତି ଅନୁଯାୟୀ ଉତ୍ପାଦନ ନ କରି ଲୋକଙ୍କର ଗୃହିଦା ଦୃଷ୍ଟିରୁ ଉତ୍ପାଦନ କରାଗଲେ ଉତ୍ପାଦନ-ଖର୍ଚ୍ଚ ବହୁତ ବଢ଼ିଯିବ; ଫଳରେ ଏହା କଳମାଲିକର କ୍ଷତି ଘଟାଇବ । କାରଣ ବୃହଦାକାର କଳକାରଖାନାରେ ଅଳ୍ପ ଉତ୍ପାଦନ ପାଇଁ ଅପେକ୍ଷାକୃତ ଅଧିକ ଖର୍ଚ୍ଚ ପଡ଼େ । ତେଣୁ ଲାଭ ଦୃଷ୍ଟିରୁ କଳମାଲିକ ଲୋକଙ୍କ କଥା ବିଚାର ନ କରି ବହୁ-ଉତ୍ପାଦନରେ ମନ ବଳାଏ । ଉଦାହରଣ ସ୍ୱରୂପ ବାଟା-ଯୋତା-କାରଖାନା ଲୋକଙ୍କର ଗୃହିଦା ଦୃଷ୍ଟିରୁ ଉତ୍ପାଦନ ନ କରି ତାହାର ଶକ୍ତି ଅନୁଯାୟୀ ଉତ୍ପାଦନ କରେ ଓ ପରେ ପରିପ୍ରଚାର ଦ୍ୱାରା ଲୋକଙ୍କ ମଧ୍ୟରେ ସେଥିର ଅଭାବ ସୃଷ୍ଟି କରେ ।

ଲୋକେ କିପରି ଅଳ୍ପକେ ସନ୍ତୁଷ୍ଟ ରହି ସୁଖ-ସ୍ୱାଚ୍ଛନ୍ଦ୍ୟମୟ ଜୀବନଯାପନ କରିବେ, ପ୍ରଚଳିତ ଅର୍ଥନୈତିକ ବ୍ୟବସ୍ଥା ତାହା ଗୃହେଁ ନାହିଁ । ଜୀବନ ଧାରଣ ପାଇଁ ମୌଳିକ ଆବଶ୍ୟକତା ଦୃଷ୍ଟିରୁ ଜିନିଷପତ୍ରକୁ ଏକଚାଟିଆ ଅଧିକାର କରି ନେଇ ଲୋକଙ୍କ ମଧ୍ୟରେ ଅଭାବ ସୃଷ୍ଟି କରିବା ଏହାର ନୀତି । ସେହିପରି କେତେକ ଅନାବଶ୍ୟକ ବା ଅଳ୍ପାବଶ୍ୟକ ଜିନିଷକୁ ବହୁଳ ଭାବରେ ଆଗ ଉତ୍ପାଦନ କରି ପରେ ଯେ କୌଣସି ଉପାୟରେ ସେହି ସେହି ଜିନିଷ ପ୍ରତି ସମାଜରେ ଗୃହିଦା ସୃଷ୍ଟି କରିବା ଏହି ଅର୍ଥନୀତିର ଅନ୍ୟ ଏକ ଦିଗ । ଏହା ଏକ ବସ୍ତୁବାଦୀ ଅର୍ଥନୀତି ଓ ଲୋକସାଧାରଣଙ୍କର ବାସ୍ତବ ବିକାଶ ପାଇଁ ଏଥିରେ

କୌଣସି ବିଗ୍ରହର ଅବକାଶ ନାହିଁ । ଫଳରେ ପ୍ରଚଳିତ ଅର୍ଥନୀତି ଶୋଷଣର ଅର୍ଥନୀତି ବ୍ୟତୀତ ଅନ୍ୟ କିଛି ନୁହେଁ ।

# ଗାନ୍ଧୀ-ଅର୍ଥନୀତିର ସ୍ୱରୂପ

ଗାନ୍ଧିଜୀ ସତ୍ୟ ଓ ଅହିଂସାର ପ୍ରତୀକ । ତେଣୁ ତାଙ୍କର ଅର୍ଥନୀତି ସତ୍ୟ ଓ ଅହିଂସାର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ । ଗାନ୍ଧୀ-ଅର୍ଥନୀତି ଶୋଷଣର ଅର୍ଥନୀତି ନୁହେଁ । ଏହା ସତ୍ୟ, ଶିବ ଓ ସୁନ୍ଦରର ଅର୍ଥନୀତି । ଆହୁରି ସଂକ୍ଷେପରେ କହିଲେ—ଏହା ହେବ ସେବାର ଅର୍ଥନୀତି । ନିଜେ ବଞ୍ଚିବା ଓ ଅନ୍ୟମାନଙ୍କୁ ବଞ୍ଚିବାକୁ ଦେବା ହେଲା ଏହାର ପ୍ରଧାନ ଆଦର୍ଶ । ଏହି ସେବା-ଅର୍ଥନୀତି ଫଳରେ ମନୁଷ୍ୟ ନିଜେ ଜୀଇଁ ରହିବାକୁ ଯାଇ ଅନ୍ୟର ଜୀବନ-ପଥରେ ଅନ୍ତରାୟ ହେବନାହିଁ । ଅନ୍ୟର ଜୀବନ ମୂଲ୍ୟରେ ବଞ୍ଚି ରହିବାର ସଙ୍କୀର୍ଣ୍ଣ ସ୍ୱାର୍ଥଠାରୁ ସେ ବହୁ ଦୂରରେ ରହିବ । କେବଳ ସେତିକି ନୁହେଁ, ଗାନ୍ଧୀ-ଅର୍ଥନୀତି ଏଭଳି ଜୀବନଧାରଣର ଉପାୟ ବାହାର କରିବାକୁ ଚାହେଁ, ଯାହାଦ୍ୱାରା ମନୁଷ୍ୟ ନିଜେ ବଞ୍ଚି ରହିବା ସଙ୍ଗେ ସଙ୍ଗେ ଅନ୍ୟର ବଞ୍ଚି-ରହିବାରେ ଯଥାଶକ୍ତି ସାହାଯ୍ୟ କରିପାରିବ । ଏହି ଅର୍ଥନୀତି ଅନୁଯାୟୀ ମନୁଷ୍ୟ ନିଜେ ବଞ୍ଚିରହିବ, ଅନ୍ୟକୁ ସୁଖସ୍ୱାଚ୍ଛନ୍ଦ୍ୟରେ ବଞ୍ଚି ରହିବାର ଅଧିକାରରୁ ବଞ୍ଚିତ କରିବ ନାହିଁ; ବରଂ ସେ ଦିଗରେ ତାକୁ ଯଥାଶକ୍ତି ସାହାଯ୍ୟ ସହଯୋଗ କରିବ ।

ମନୁଷ୍ୟର ଚରିତ୍ର ଓ ବ୍ୟକ୍ତିତ୍ୱର ବିକାଶ ସାଧନ ଗାନ୍ଧୀ-ଅର୍ଥନୀତିର ମୌଳିକ ଲକ୍ଷ୍ୟ । ବସ୍ତୁ ତୁଳନାରେ ମାନବିକତାକୁ ଏଥିରେ ଅଧିକ ଉଚ୍ଚାସନ ଦିଆଯାଇଅଛି । ଅର୍ଥନୈତିକ

କାର୍ଯ୍ୟକଳାପରେ ନିପ୍ତରହି ମନୁଷ୍ୟ ଯେପରି ତା'ର ନୈତିକତାକୁ ବଳି ନ ଦିଏ, ସେଥିପାଇଁ ଏଥିରେ ନୂଆ ବାଟ ଫିଟାଇବାର ଚେଷ୍ଟା ହୋଇଛି । ଏହି ଅର୍ଥନୀତି ଅନୁସାରେ ଦରକାର ପଡ଼ିଲେ ମନୁଷ୍ୟ ନିଜର ବ୍ୟକ୍ତିତ୍ୱ ଓ ନୈତିକତାର ପଦତଳେ ବସ୍ତୁବାଦୀ ସୁଖସ୍ୱାଚ୍ଛନ୍ଦ୍ୟକୁ ଅମ୍ଳାନ ବଦନରେ ବିସର୍ଜନ କରିବା ପାଇଁ ଆଗଭର ହୋଇ ବାହାରିବ ।

କେତେକ ତଥାକଥିତ ସଭ୍ୟଦେଶ ପୃଥିବୀର ଅନ୍ୟାନ୍ୟ ଅସଭ୍ୟ ଜାତିର ଲୋକଙ୍କୁ ସଭ୍ୟ କରିବା ପାଇଁ ବିଶେଷ ଆନ୍ତରିକତା ପ୍ରକାଶ କରନ୍ତି । କିନ୍ତୁ ଏହି ବାହ୍ୟ ଆନ୍ତରିକତାର୍ଦ୍ଧି ଶୋଷଣର ଅସ୍ତ୍ର । ଏହା ତଳେ ରହିଛି ବ୍ୟବସାୟୀ-ଅର୍ଥନୀତି । ଅସଭ୍ୟ ଦେଶଗୁଡ଼ିକୁ ସଭ୍ୟ କରିବାର ଛଳନାରେ ସେମାନଙ୍କର ସ୍ୱାଧୀନତା ଅପହରଣ କରାଯାଉଅଛି ଓ ଅନେକ ଅନାବଶ୍ୟକ ଜିନିଷ ନେଇ ସଭ୍ୟ ହେବାକୁ ସେମାନଙ୍କୁ ଏକରକମ ବାଧ୍ୟ କରାଯାଉଅଛି । ଉଦାହରଣ ସ୍ୱରୂପ ଫ୍ରାନ୍ସର ଟ୍ୟୁନିସିଆ ଆକ୍ରମଣ ବା ଇଟାଲିର ଆବିସିନିଆ ଆକ୍ରମଣ ପଛରେ ସେବା-ମନୋଭାବ ଅଛି ବୋଲି କହିବା ଅର୍ଥ ସତ୍ୟର ଅପଳାପ କରିବା । ସେହିପରି ମଧ୍ୟ ଜୀବନଧାରଣର ମାନ ବଢ଼ାଇବାର ଛଳନାରେ ସେମାନଙ୍କର ଦେଶକୁ ଲାଭଜନକ ବଜାରରେ ପରିଣତ କରାଯାଉଅଛି । ଏହିପରି ବିଭିନ୍ନ ଅନୁନ୍ନତ ରାଜ୍ୟକୁ ଲାଭକର ବଜାରରେ ପରିଣତ କରି ଚିରଦିନ ପାଇଁ ସେସବୁ ଅଧିକାର କରିବାର ଭିତରି ଉଦ୍ଦେଶ୍ୟ ତଥାକଥିତ ସଭ୍ୟ ଦେଶମାନଙ୍କର ରହିଥିବାର ଦେଖାଯାଏ । ଫଳରେ ଦୁନିଆରେ ଆଜି ଏତେ ଅଶାନ୍ତି, ଅସନ୍ତୋଷ, ବାଦବିସମ୍ବାଦ, ଯୁଦ୍ଧବିଗ୍ରହ ଲାଗି ରହିଛି ।

ଏସବୁ ଶୋଷଣ ଦୂର କରି ଲୋକମାନଙ୍କୁ ସେମାନଙ୍କର ମୌଳିକ ଆବଶ୍ୟକତା ମିଟାଇ ଦେବା ଗାନ୍ଧୀ-ଅର୍ଥନୀତିର ଲକ୍ଷ୍ୟ । ଖାଦ୍ୟ, ବାସ, ବସ୍ତ୍ର, ଶିକ୍ଷା, ସଫାଇ, ସ୍ୱାସ୍ଥ୍ୟ ପ୍ରଭୃତି ମନୁଷ୍ୟ ବଞ୍ଚି ରହିବାପାଇଁ ନିତାନ୍ତ ଆବଶ୍ୟକ । ତେଣୁ ଏସବୁକୁ ଜୀବନରେ ଅଧିକ ମୂଲ୍ୟ ଦିଆଯିବା ଉଚିତ; କିନ୍ତୁ ଆଜକାଲି ଜିନିଷର ପ୍ରକୃତ ମୂଲ୍ୟ ବିଗୃହ ହେଉନାହିଁ ।

ଏହି ପାଶ୍ଚାତ୍ୟ ଅର୍ଥନୀତିକ ଜାଲରୁ ମୁକୁଳିବାକୁ ହେଲେ ଆମ୍ଭମାନଙ୍କ ପକ୍ଷରେ ଆତ୍ମସଂଯମ ଓ ଶୃଙ୍ଖଳାହିଁ ଏକମାତ୍ର ପଥ । ବିଳାସବ୍ୟସନରେ ପାଖ ନ ପଶି କିପରି ସୁସ୍ଥ ସୁନ୍ଦର ଜୀବନ-ଯାପନ କରିବାକୁ ହେବ, ସେଥିପାଇଁ ଆମ୍ଭମାନଙ୍କୁ ସାବଧାନ ହେବାକୁ ପଡ଼ିବ । ସର୍ବ ପ୍ରଥମେ ଆମ୍ଭମାନଙ୍କ ଅନାବଶ୍ୟକ ଓ ଅଳ୍ପାବଶ୍ୟକ ଖର୍ଚ୍ଚ କାଟି ଦେବାକୁ ପଡ଼ିବ । ତା ପରେ ସ୍ଥାନୀୟ ଉତ୍ପାଦନ ଉପରେ ହିଁ ଆମ୍ଭମାନଙ୍କୁ ଯଥାସମ୍ଭବ ନିର୍ଭର କରିବାକୁ ହେବ । ଏହାଦ୍ୱାରା ଆମ୍ଭ ହାତଧନ ଆମ୍ଭ ଅଞ୍ଚଳର ବାହାରକୁ ଚାଲିଯାଇପାରିବ ନାହିଁ । ଆଉ ମଧ୍ୟ ଆମ୍ଭେମାନେ ଯେତେ ଦୂର ସମ୍ଭବ ହସ୍ତଶିଳ୍ପ-ଜାତ ଦ୍ରବ୍ୟ ଉପରେ ନିର୍ଭର କରିବା ଉଚିତ । ଏହାଦ୍ୱାରା ଦେଶର ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା କରିବାରେ ଆମେ କିଛି କିଛି ସାହାଯ୍ୟ କରି ପାରିବା । କାରଣ ଆମେ ଏହାଦ୍ୱାରା ଶିଳ୍ପପତିର ଧନ ବଢ଼ାଇବାରେ ନିମିତ୍ତ ହେବା ନାହିଁ ।

ପାଶ୍ଚାତ୍ୟ ଅର୍ଥନୈତିକ ପ୍ରଭାବରେ ଲୋକସାଧାରଣଙ୍କର ବ୍ୟାବସାୟିକ ବୁଦ୍ଧି ବଢ଼ିବା ସଙ୍ଗେ ସଙ୍ଗେ ନୈତିକ ଜୀବନରେ ଅଧୋଗତି ଘଟିଛି । ଅର୍ଥଚିନ୍ତା ଲୋକସାଧାରଣଙ୍କର ଜୀବନକୁ ଗ୍ରାସ କରି ଦେଇଅଛି; ତେଣୁ ମଣିଷଠାରେ ଆଜ ମାନବିକତାର

ବିଚାର ନାହିଁ—ଅଛି ଲାଭ କ୍ଷତିର ବିଚାର; ଅର୍ଥହିଁ ସମସ୍ତ ଅନର୍ଥର ମୂଳ କାରଣ । ଏହି ଅର୍ଥନୈତିକ ସଂସ୍ଥାକୁ ଓଲଟପାଲଟ କରିବାକୁ ହେଲେ ଲୋକସାଧାରଣଙ୍କୁ ନୂତନ ଢଙ୍ଗରେ ଶିକ୍ଷା ଦେବାକୁ ପଡ଼ିବ । ଲୋକମାନେ ଅର୍ଥ-ସର୍ବସ୍ୱ ନ ହୋଇ କପରି ନୀତି ଓ ଆଦର୍ଶସର୍ବସ୍ୱ ହେବେ ସେଥିପ୍ରତି ଶିକ୍ଷଣ ଦୃଷ୍ଟି ଦେବାକୁ ହେବ । ମୋଟ ଉପରେ ଆମ୍ଭମାନଙ୍କ ଜୀବନଧାରଣର ପ୍ରଣାଳୀ ଏପରି ଢଙ୍ଗରେ ଶିକ୍ଷାର ପ୍ରଭାବରେ ବଦଳିବା ଦରକାର, ଯେପରି ଆମେ କେବଳ ନିଜ ପାଇଁ ବଞ୍ଚି ନ ରହି ଦେଶ ଓ ଜାତି ପାଇଁ ବଞ୍ଚି ରହିବା । ଆମ ଜୀବନରେ ଜାତୀୟତା ଓ ମାନବିକତାର ବିଚାର ସର୍ବାଗ୍ରେ ସ୍ଥାନ ପାଇବା ଆବଶ୍ୟକ ।

ଅର୍ଥନୈତିକ ଦିଗ ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଲି ଗାନ୍ଧିଜୀ ମନେ କରିଥିଲେ ମଧ୍ୟ ସାମ୍ୟବାଦୀ ଓ ପୁଞ୍ଜିବାଦୀମାନଙ୍କ ପରି ସମସ୍ତ ଗୁରୁତ୍ୱ ତାହାରି ଉପରେ ଦେଇ କରିବାକୁ ସେ ପ୍ରସ୍ତୁତ ନ ଥିଲେ । ଜୀବନର ବିକାଶ ପାଇଁ ଅର୍ଥନୈତିକ କାର୍ଯ୍ୟକଳାପ ଉପାୟ ମାତ୍ର; କିନ୍ତୁ ପାଶ୍ଚାତ୍ୟ ଅର୍ଥନୀତି ଫଳରେ ଏହି ଉପାୟ ଓ ଲକ୍ଷ୍ୟ ମଧ୍ୟରେ କୌଣସି ପ୍ରଭେଦ ରହୁନାହିଁ । ଲୋକେ କେବଳ ଅର୍ଥନୈତିକ କାର୍ଯ୍ୟକଳାପରେ ବ୍ୟସ୍ତ ରହୁଛନ୍ତି । କିନ୍ତୁ ଏହା ଭାରତୀୟ ସଭ୍ୟତା ଓ ସଂସ୍କୃତିର ପୂରା ବିରୋଧୀ । ଆମ ଦେଶର ଲୋକେ ମାନବିକତାର ମୁକ୍ତି ପାଇଁ ଜୀବନ ଦେଇଛନ୍ତି । ବୁଦ୍ଧ, ଅଶୋକ, ଗାନ୍ଧୀ ପ୍ରଭୃତି ଏହାର ଜ୍ୱଳନ୍ତ ପ୍ରମାଣ । ଆମ ସଭ୍ୟତା ଓ ସଂସ୍କୃତିର ପୁନରୁଦ୍ଧାର ହିଁ ଗାନ୍ଧୀ-ଅର୍ଥନୀତିର ମୌଳିକ ଲକ୍ଷ୍ୟ । ଏହା ପ୍ରାଚ୍ୟ ସଭ୍ୟତା ଓ ସଂସ୍କୃତିଦ୍ୱାରା ପରିପୂର୍ଣ୍ଣ ପ୍ରଭାବିତ ।

ଜୀବନରେ ନାନାବିଧ ଅଭାବ ବୃଦ୍ଧି କରି ସେସବୁର ପୂରଣ ପାଇଁ ବସ୍ତୁଉତ୍ପାଦନ- ନୀତିକୁ ଆଶ୍ରୟ କରିବା ପାଶ୍ଚାତ୍ୟ ଅର୍ଥ-ନୀତିର କାମ । କିନ୍ତୁ ସରଳ ଜୀବନଯାପନ କରି ଏହି ବସ୍ତୁ ଉତ୍ପାଦନର କବଳରୁ ମୁକ୍ତିଲାଭ କରିବା ଗାନ୍ଧୀ-ଅର୍ଥନୀତିର କାମ । କାରଣ ପାଶ୍ଚାତ୍ୟ ଅର୍ଥନୈତିକ ବ୍ୟବସ୍ଥା ଅନୁସାରେ ଜୀବନର ଅଭାବ ବୃଦ୍ଧି ଓ ତଦନୁରୂପ ଉତ୍ପାଦନ ବୃଦ୍ଧିରେ କୌଣସି ଶେଷ ସୀମା ରହୁନାହିଁ । ବସ୍ତୁ ଉତ୍ପାଦନରୂପକ ମରୀଚିକା ପଛରେ ଧାଇଁବା ହିଁ ଆଜି ମଣିଷ ପକ୍ଷରେ ସାର ହୋଇଛି; କିନ୍ତୁ ଗାନ୍ଧିଜୀ ଏହି ବସ୍ତୁ-ଉତ୍ପାଦନ-ରୂପକ ଭୂତର କବଳରୁ ମୁକୁଳିବାକୁ ବ୍ୟାକୁଳ ହେଉଥିଲେ । ବାସ୍ତବିକ ଅର୍ଥ-ନୈତିକ କ୍ଷେତ୍ରରେ ବ୍ରହ୍ମଚର୍ଯ୍ୟ ପାଳନ ହିଁ ଗାନ୍ଧୀ-ଅର୍ଥନୀତିର ଯଥାର୍ଥ ଆଦର୍ଶ ।

## ଗାନ୍ଧୀବାଦ ଓ ସାମ୍ୟବାଦ

ପୁଞ୍ଜିବାଦୀ-ଅର୍ଥନୀତିର କବଳରୁ ମୁକ୍ତିଲାଭ କରିବା ଗାନ୍ଧି ଓ ସାମ୍ୟବାଦୀ ଅର୍ଥନୀତିର ମୌଳିକ ଲକ୍ଷ୍ୟ । ଉତ୍ପାଦକଶ୍ରେଣୀର ଉନ୍ନତି ବିଧାନ କରିବା ପାଇଁ ମଧ୍ୟ ଉଭୟ ଅର୍ଥନୀତି ଉଦ୍ଦିଷ୍ଟ । ତେଣୁ ଲକ୍ଷ୍ୟ ଓ ଆଦର୍ଶ ଦୃଷ୍ଟିରୁ ବିଚାର କଲେ ଉଭୟ ନୀତି ପ୍ରାୟ ସମାନ । କିନ୍ତୁ ଲକ୍ଷ୍ୟ ସାଧନ କରିବାର ଉପାୟ ଦୃଷ୍ଟିରୁ ବିଚାର-କଲେ ଏହି ନୀତିଦ୍ୱୟ ମଧ୍ୟରେ କେତେକ ଫାଙ୍କ୍ ଫରକ୍ ଥିବାର ଦେଖାଯାଏ ।

ଦେଶରେ ସମସ୍ତ ପ୍ରକାର ଶୋଷଣର ଅବସାନ ଘଟାଇ ଲୋକସାଧାରଣଙ୍କ ମଧ୍ୟରେ ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା କରିବା

ଉଭୟ ଗାନ୍ଧୀବାଦ ଓ ସାମ୍ୟବାଦର ଆଦର୍ଶ । ସବୁଠାରୁ ଧନୀ ଓ ଗରିବ ମଧ୍ୟରେ ଅତି ବେଶୀ ବାର ଗୁଣ ପାର୍ଥକ୍ୟ ରହିପାରେ ବୋଲି ବାପୁଜୀ ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି । ସେହିପରି ସାମ୍ୟବାଦ ମଧ୍ୟ ଧନୀ ଓ ଗରିବ ମଧ୍ୟରେ ଥିବା ଆକାଶ ପାତାଳ ପ୍ରଭେଦକୁ କମାଇ ଦେବା ପାଇଁ ଅଭିପ୍ରେତ । ସାମ୍ୟବାଦୀ ଅର୍ଥନୈତିକ ବ୍ୟବସ୍ଥା ଅନୁସାରେ ଏହି ପାର୍ଥକ୍ୟ ଆଠ ଗୁଣରୁ ଅଧିକ ହେବା ଉଚିତ ନୁହେଁ । କିନ୍ତୁ ପ୍ରଧାନ ସାମ୍ୟବାଦୀ ଦେଶ ରୁଷିଆରେ ମଧ୍ୟ ଧନୀ ଓ ଗରିବ ମଧ୍ୟରେ ପଚାଶ ଗୁଣ ପର୍ଯ୍ୟନ୍ତ ପାର୍ଥକ୍ୟ ଥିବାର ଦେଖାଯାଏ । ଅବଶ୍ୟ ଚୀନ ଦେଶରେ ବର୍ତ୍ତମାନ ଦରମାଗତ ପାର୍ଥକ୍ୟ ଅନେକ କମାଇ ଦିଆଯାଇଛି । ଏଠାର ପ୍ରଧାନ ଶାସକ ମାଓ-ସେ-ତୁଂ ଟ ୬୦୦୲ ଦରମା ପାଉଥିବା ସ୍ଥଳେ ଜଣେ ସାଧାରଣ ଶ୍ରମିକ ମାସକୁ ଟ ୧୦୦୲ ପର୍ଯ୍ୟନ୍ତ ପାଏ ।

ଶ୍ରମ ହିଁ ସମ୍ପଦ—ଏହା ସାମ୍ୟବାଦର ମୂଳମନ୍ତ୍ର; କାରଣ ସାମ୍ୟବାଦୀମାନେ କହନ୍ତି ଯେ ଧନଦ୍ୱାରା ଜାତୀୟ ସମ୍ପତ୍ତିର ଅଭିବୃଦ୍ଧି ହୋଇ ନ ଥାଏ । କୃଷକ ଓ ଶ୍ରମିକ ମୁଣ୍ଡର ଝାଳ ତୁଣ୍ଡରେ ମାରି ଟାଙ୍ଗରା ଭୂଇଁରୁ ଯେଉଁ ସୁନାର ଫସଲ ଆଦାୟ କରନ୍ତି ତାହା ଦ୍ୱାରହିଁ ଜାତି ବଞ୍ଚିରହେ । କିନ୍ତୁ ବ୍ୟବସାୟୀ ସେହି ଫସଲକୁ ନିଜ ଅକ୍ତିଆରରେ ରଖି ପଇସାକ ଧନ ଦୁଇ ପଇସା କରିବାରେ ଦେଶର ଉତ୍ପାଦନ ପରିମାଣ ବଢ଼ିଯାଏ ନାହିଁ । ତେଣୁ ବ୍ୟବସାୟୀ କୌଣସିମତେ ଜାତୀୟ ସମ୍ପଦ ବୃଦ୍ଧିରେ ଭାଗୀଦାର ନୁହେଁ । ପ୍ରକୃତି ସହିତ ଲଢ଼ି ଉତ୍ପାଦନ ବୃଦ୍ଧି କରିବାରେ ଶ୍ରମିକ ତା'ର ଜୀବନ ଦିଏ । ତାର ଶ୍ରମସ୍ୱେଦ ଉପରେ ହିଁ ଦେଶର ଅଗ୍ରଗତି ନିର୍ଭର କରେ । କଳକାରଖାନା ଚଳାଇବା ଓ

ଦେଶବାସୀଙ୍କ ମୁହଁରେ ଢୋକ ପାଣି ଦେବା ପାଇଁ ଏହି କୃଷକ ଶ୍ରମିକମାନଙ୍କ ଦ୍ୱାରା ଉତ୍ପାଦିତ କଞ୍ଚାମାଲହିଁ ଏକମାତ୍ର ସମ୍ବଳ । କୃଷକ ଓ ଶ୍ରମିକ ଦେଶର ଉତ୍ପାଦନ ପରିମାଣକୁ ବୃଦ୍ଧି କରିବାରେ ପ୍ରଧାନ ସହାୟକ; ତେଣୁ ସେମାନେହିଁ ଦେଶର ସର୍ବସ୍ୱ । ଗାନ୍ଧିଜୀ ମଧ୍ୟ ଏହି ନୀତି ସହିତ ପୂରାପୂରି ଏକମତ । ଗାଁଗହଳର କୃଷକକୁ କେନ୍ଦ୍ର କରି ଗାନ୍ଧିଜୀ ତାଙ୍କର ଅର୍ଥନୈତିକ ବ୍ୟବସ୍ଥା ଗଢ଼ିଛନ୍ତି । ଏ କ୍ଷେତ୍ରରେ ଉଭୟ ଅର୍ଥନୀତିରେ କୌଣସି ଅମେଳ ନାହିଁ ।

ଆଗରୁ କୁହାଯାଇଛି ଯେ ଗାନ୍ଧୀ-ଅର୍ଥନୀତି ସତ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ; କିନ୍ତୁ ସାମ୍ୟବାଦୀମାନଙ୍କର ହିଂସାତ୍ମକ ନୀତିରେ ବିଶ୍ୱାସ । ଗାନ୍ଧୀବାଦ ଓ ସାମ୍ୟବାଦର ଲକ୍ଷ୍ୟ ଏକ; କିନ୍ତୁ ପନ୍ଥା ଭିନ୍ନ । ଗାନ୍ଧିଜୀ ବିଶ୍ୱାସ କରନ୍ତି ଯେ, ସତ୍ ଲକ୍ଷ୍ୟ ସାଧନ କରିବା ସକାଶେ ସତ୍‌ପନ୍ଥାର ଆଶ୍ରୟ ନେବାକୁ ହେବ । ଲକ୍ଷ୍ୟ ଯେତେ ସତ୍ ହେଲେ ମଧ୍ୟ, ଯଦି ଉପାୟ ସତ୍ ନ ହେଲା—ତା'ହେଲେ ଆମର ଲକ୍ଷ୍ୟ ଅସଦୁପାୟ ଦ୍ୱାରା ପ୍ରଭାବିତ ହେବ । ତେଣୁ ସତ୍ ଲକ୍ଷ୍ୟସାଧନ କରିବା ସକାଶେ ସତ୍ ଉପାୟର ଆଶ୍ରୟ ନେବା ନିତାନ୍ତ ଦରକାର । କିନ୍ତୁ ସାମ୍ୟବାଦୀମାନଙ୍କର ଏହି ସତ୍ ଉପାୟରେ ବିଶ୍ୱାସ ନାହିଁ । ସତ୍ ବା ଅସତ୍ ଯେ କୌଣସି ଉପାୟରେ ସେମାନଙ୍କର ସାଧୁ ଉଦ୍ଦେଶ୍ୟ ସାଧନ କରିବାକୁ ସେମାନେ ପ୍ରସ୍ତୁତ । ପ୍ରଧାନତଃ ଏହିଠାରେହିଁ ଗାନ୍ଧୀବାଦ ଓ ସାମ୍ୟବାଦ ମଧ୍ୟରେ ପ୍ରଭେଦ ଦେଖାଯାଏ ।

ଏକ ସାମ୍ୟବାଦୀ ରାଷ୍ଟ୍ର ଗଠନ କରିବା ପୂର୍ବରୁ ଶିଳ୍ପପତି, ପୁଞ୍ଜିପତି ଓ ଜମିଦାରମାନଙ୍କର ହୃଦୟରେ ପରିବର୍ତ୍ତନ ଆଣିବା

ନିତାନ୍ତ ଦରକାର ବୋଲି ଗାନ୍ଧୀବାଦ ବିଶ୍ୱାସ କରେ । ଯଦି ଆମେ ଯୋର ଜବରଦସ୍ତି ଜମିଦାର ଓ ପୁଞ୍ଜିପତିମାନଙ୍କୁ ଦାବି ଚପି ଆମର ସାମ୍ୟବାଦ ପ୍ରତିଷ୍ଠା କରୁ, ତା'ହେଲେ ଦେଶରୁ ଅଶାନ୍ତି ଓ ଅସନ୍ତୋଷ ଦୂର ହେବ ନାହିଁ । ଏହା କୁହୁଳି କୁହୁଳି ଦିନେ ନା ଦିନେ ରକ୍ତବିପ୍ଳବର ରୂପ ନେବା ଅସମ୍ଭବ ନୁହେଁ । ତେଣୁ ଆସ୍ତେ ଆସ୍ତେ ଜମିଦାର ଓ ପୁଞ୍ଜିପତିମାନଙ୍କ ଉପରେ ନୈତିକ ପ୍ରଭାବ ପକାଇବାକୁ ଗାନ୍ଧିଜୀ ଚାହୁଁଥିଲେ । ଏହି କ୍ରମିକ ପରିବର୍ତ୍ତନ ଉପରେ ସେ ଅଟଳ ବିଶ୍ୱାସ ରଖିଥିଲେ । ଏହିପରି ହୃଦୟର ପରିବର୍ତ୍ତନଦ୍ୱାରା ଦେଶରେ ଯେଉଁ ସାମ୍ୟବାଦ ପ୍ରତିଷ୍ଠିତ ହେବ, ତାହାର ଭିତ୍ତି ସୁଦୃଢ଼ ଓ ଚିରସ୍ଥାୟୀ ହେବ । ତେଣୁ ପରେ ଏହା ଭୁଷୁଡ଼ି ପଡ଼ିବାର ଆଶଙ୍କା ନ ଥିବ । କିନ୍ତୁ ସାମ୍ୟବାଦୀମାନେ ଯୋର ଜବରଦସ୍ତି ଯେତେ ଶୀଘ୍ର ପାରନ୍ତି ସେମାନଙ୍କର ସାମ୍ୟବାଦ ପ୍ରତିଷ୍ଠା କରିବାକୁ ତତ୍ପର । ଏହାରି ଫଳରେ ଆଜି ଦେଶରେ ଅଶାନ୍ତି, ଅସନ୍ତୋଷ, ଯୁଦ୍ଧବିଗ୍ରହ ଓ ହିଂସାତ୍ମକ କ୍ରିୟାକଳାପ ସବୁ ବେଶି ଅଧିକ ଦେଖାଦେଉଛି ।

ଲୋକସାଧାରଣଙ୍କର ଜୀବନଧାରଣର ମାନ ବଢ଼ାଇବା ସକାଶେ ସାମ୍ୟବାଦୀମାନେ ପୁଞ୍ଜିବାଦୀମାନଙ୍କ ପରି ବସ୍ତୁ ଉତ୍ପାଦନରେ ବିଶ୍ୱାସ କରନ୍ତି । ତେଣୁ ଉଭୟ ପୁଞ୍ଜିବାଦ ଓ ସାମ୍ୟବାଦର ବସ୍ତୁବାଦ ଉପରେ ଅଟଳ ବିଶ୍ୱାସ । କିନ୍ତୁ ଗାନ୍ଧିବାଦରେ ବସ୍ତୁବାଦ ଓ ଆଧ୍ୟାତ୍ମିକବାଦର ମଧୁର ମିଳନ ଘଟିଛି । ମନୁଷ୍ୟ ହୃଦୟସ୍ପର୍ଶୀ ନ ହୋଇ ଓ କୌଣସି ନୀତି ଅନୀତି ବିଚାର ନ କରି କେବଳ ଜୀବନଧାରଣର ମାନ ବଢ଼ାଇଲେ ତା'ର ବାସ୍ତବ ବିକାଶ ସମ୍ଭବ ହେବ ନାହିଁ । ତେଣୁ ଗାନ୍ଧିଜୀ

ଆଧ୍ୟାତ୍ମିକବାଦକୁ ବସ୍ତୁବାଦଠାରୁ ଉଚ୍ଚତର ଆସନ ଦେଇଛନ୍ତି । ଖାଲି ଖାଇପିଇ ମଉଜମଜଲିସ୍ କରି ଜୀବନଯାପନ କଲେ ଆମର ଲକ୍ଷ୍ୟ ସାଧିତ ହେବ ନାହିଁ; କାରଣ କେବଳ ଖାଇପିଇ ବଞ୍ଚି ରହିବା ଆମ ଜୀବନର ଉଦ୍ଦେଶ୍ୟ ନୁହେଁ । ବରଂ ଆମ ଜୀବନର ମହତ୍ ଉଦ୍ଦେଶ୍ୟ ସାଧନ କରିବା ପାଇଁ ଆମର ଖାଇପିଇ ବଞ୍ଚି ରହିବା ଦରକାର । ତେଣୁ ଜୀବନର ମହତ୍ ଆଦର୍ଶକୁ କାର୍ଯ୍ୟକାରୀ କରିବା ପାଇଁ ଆମର ବଞ୍ଚି ରହିବା ଏକ ଉପାୟ ମାତ୍ର । କିନ୍ତୁ ବସ୍ତୁବାଦୀମାନେ ଏହି ଉପାୟ ଓ ଲକ୍ଷ୍ୟ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖନ୍ତିନାହିଁ । ପ୍ରକୃତ ମଣିଷ ଗଢ଼ିବା ଗାନ୍ଧିବାଦର ଆଦର୍ଶ । କିନ୍ତୁ ଉତ୍ପାଦନର ପ୍ରାଚୁର୍ଯ୍ୟରେ ଦେଶକୁ ଭସାଇ ଦେବା ସାମ୍ୟବାଦର ଆଦର୍ଶ । ଏହା ଗାନ୍ଧିବାଦ ଓ ସାମ୍ୟବାଦ ମଧ୍ୟରେ ଅନ୍ୟ ଏକ ପ୍ରଧାନ ପାର୍ଥକ୍ୟ ।

ସାମ୍ୟବାଦ ଓ ପୁଞ୍ଜିବାଦ ଉଭୟ ବହୁ-ଉତ୍ପାଦନରେ ବିଶ୍ୱାସ କରନ୍ତି । ଯନ୍ତ୍ରଶିଳ୍ପ ଜରିଆରେ ଦେଶର ଉତ୍ପାଦନ ପରିମାଣ ବଢ଼ାଇବା ସେମାନଙ୍କର ଉଦ୍ଦେଶ୍ୟ । କିନ୍ତୁ ଗାନ୍ଧୀ-ଦର୍ଶନ ଏହାର ବିରୋଧ କରେ । କେବଳ ଆବଶ୍ୟକତା ଅନୁସାରେ ଓ ଯେତେ ଦୂର ସମ୍ଭବ କୁଟୀରଶିଳ୍ପ ଜରିଆରେ ଉତ୍ପାଦନ ପରିମାଣ ବୃଦ୍ଧି କରିବାକୁ ଗାନ୍ଧିବାଦ ଚାହେ । କାରଣ ବହୁ-ଉତ୍ପାଦନ ହିଁ ହିଂସା ଓ ଧ୍ୱଂସର ଅସ୍ତ୍ରରୂପେ କାମ କରେ । ବିଶେଷତଃ ଭାରତ ଭଳି ଦେଶରେ ସାମ୍ୟବାଦୀମାନଙ୍କର ବହୁ-ଉତ୍ପାଦନ-ନୀତି ଖାପ ଖାଇବ ନାହିଁ ବୋଲି ଗାନ୍ଧିଜୀଙ୍କର ଦୃଢ଼ ଧାରଣା । କାରଣ ଭାରତରେ ଲୋକସଂଖ୍ୟା ତୁଳନାରେ ପ୍ରାକୃତିକ ସମ୍ବଳ (Natural resources) ଯଥେଷ୍ଟ ନାହିଁ । ଲୋକଙ୍କୁହିଁ

ଭାରତର ପ୍ରଧାନ ସମ୍ବଳ । ଏହି ଅମାପ ଲୋକଶକ୍ତିର ଯଥାଯଥ ବିନିଯୋଗ ନ ହୋଇ ପାରିଲେ ଭାରତ ଭଳି ଦେଶର ଯଥାର୍ଥ ବିକାଶ ସୁଦୂର ପରାହତ ହୋଇରହିବ । କିନ୍ତୁ ସାମ୍ୟବାଦୀ-ମାନଙ୍କର ଯନ୍ତ୍ରଶିଳ୍ପ ଜରିଆରେ ବହୁ ଉତ୍ପାଦନର ନୀତିକୁ ଭାରତ ଗ୍ରହଣ କରି ନେବା ତା ପକ୍ଷରେ ଆତ୍ମଘାତୀ ହେବ । କାରଣ ଏହା ଫଳରେ ଭାରତର କୋଟି କୋଟି ଲୋକ ବେକାର ହୋଇ ରହିବେ ଓ ଦେଶରେ ଅନ୍ତର୍ବିପ୍ଲବ ସୁନିଶ୍ଚିତ ହୋଇ ଉଠିବ ।

ମଣିଷ ନିଜର ସୁସ୍ଥ ବିକାଶ ପାଇଁ ଯେତିକି ଦରକାର ସେହି ପରିମାଣରେ ଉତ୍ପାଦନ ବଢ଼ାଇବା ଉଚିତ । ତାର ବ୍ୟବହାର ଓ ଆବଶ୍ୟକତା ଦୃଷ୍ଟିରୁ ଉତ୍ପାଦନ ନିୟନ୍ତ୍ରିତ ହେବା ଉଚିତ । ଏହା ଗାନ୍ଧିବାଦର ମୌଳିକ ନୀତି । ସାମ୍ୟବାଦ ମଧ୍ୟ ଲାଭ ପାଇଁ ଉତ୍ପାଦନ କରିବା ନୀତିରେ ବିଶ୍ୱାସ କରେ ନାହିଁ । କିନ୍ତୁ ସାମ୍ୟବାଦୀ ଦେଶ ଯନ୍ତ୍ରଶିଳ୍ପ ଉପରେ ନିର୍ଭର କରୁଥିବାରୁ ଉଦ୍‌ବୃତ୍ତ ଉତ୍ପାଦନକୁ କଟାଇବା ଉଦ୍ଦେଶ୍ୟରେ ଅନ୍ୟ ରାଜ୍ୟ ଉପରେ ବାଧ୍ୟ ହୋଇ ନିର୍ଭର କରେ । ଏହାର ଫଳରେ ବିଶ୍ୱ ପ୍ରଧାନ ସାମ୍ୟବାଦୀ ରାଜ୍ୟ ରୁଷିଆ ଆଜି ପୃଥିବୀର ଏକ-ଷଷ୍ଠାଂଶ ଅଧିକାର କରି ବସିଅଛି । କାରଣ ବୃହଦାକାର ଶିଳ୍ପ ଓ ବହୁ ଉତ୍ପାଦନ ସାମ୍ରାଜ୍ୟବାଦର ଛଦ୍ମବେଶୀ ରୂପ । ଏ ଦୃଷ୍ଟିରୁ ଦେଖିଲେ ସାମ୍ୟବାଦ ମଧ୍ୟ ସାମ୍ରାଜ୍ୟବାଦ ସହିତ ସମାନ । ଏହିସବୁ କାରଣରୁ ଗାନ୍ଧିଜୀ କୁଟୀରଶିଳ୍ପ ଓ ଶରୀର-ଶ୍ରମ ଉପରେ ଏତେ ଗୁରୁତ୍ୱ ଆରୋପ କରି ଯାଇଛନ୍ତି ।

ଗାନ୍ଧୀ ଜଣେ ବଡ଼ ସାମ୍ୟବାଦୀ । ତାଙ୍କର ସାମ୍ୟବାଦ ବାସ୍ତବତାର ଭିତ୍ତି ଉପରେ ପ୍ରତିଷ୍ଠିତ । ଭାରତର ପାଣି ପବନ

ସହିତ ଖାପ ଖାଇଲା ଭଳି ସେ ତାଙ୍କର ସାମ୍ୟବାଦକୁ ରୂପରେଖ ଦେଇଛନ୍ତି । ତେଣୁ ଏହି ଗାନ୍ଧୀ-ସାମ୍ୟବାଦହିଁ ଭାରତ ଭଳି ଦେଶରେ ସମସ୍ତ ସମସ୍ୟା ସମାଧାନର ଏକମାତ୍ର ପନ୍ଥା । ଆମ ଦେଶର ବାସ୍ତବ ପରିସ୍ଥିତି ପ୍ରତି ଦୃଷ୍ଟି ନ ଦେଇ ରୁଷିଆକୁ ସବୁ କ୍ଷେତ୍ରରେ ଅନ୍ଧ ଅନୁକରଣ କରିବା ଆମ ପକ୍ଷରେ ଠିକ୍ ହେବ ନାହିଁ । ରୁଷଦେଶ ପ୍ରତି ଯେଉଁ ନୀତି ପ୍ରଯୁଜ୍ୟ ତାହା ଆମ ପ୍ରତି ବିଷତୁଲ୍ୟ କାମ କରିପାରେ । ରୁଷଦେଶର ଆୟତନ ଅନୁସାରେ ଲୋକସଂଖ୍ୟା ଖୁବ୍ କମ । ଏହି ଦେଶ ମଧ୍ୟ ପ୍ରାକୃତିକ ବିଭବରେ ଭରପୂର । ତେଣୁ କେନ୍ଦ୍ରୀକୃତ ଯନ୍ତ୍ରଶିଳ୍ପର କୁଫଳ ହୁଏ ତ ସେ ଦେଶକୁ ଭୋଗ କରିବାକୁ ପଡ଼ିବ ନାହିଁ । କିନ୍ତୁ ଭାରତର ପରିସ୍ଥିତି ଓ ସମସ୍ୟା ସ୍ୱତନ୍ତ୍ର ।

## ସ୍ୱାବଲମ୍ବୀ ଅଞ୍ଚଳ ଗଠନ

ବାପୁଜୀ ସ୍ୱାଧୀନ ଭାରତର ଚିତ୍ର ମନେ ମନେ ଆଙ୍କିବା ବେଳେ ଏହାକୁ ଏକ ସ୍ୱାବଲମ୍ବୀ ଓ ସାର୍ବଭୌମ ରାଷ୍ଟ୍ର ରୂପେ କିପରି ଗଢ଼ିବେ, ସେଥିପାଇଁ ଚିନ୍ତା କରୁଥିଲେ । କାରଣ ଦେଶର ଅର୍ଥନୈତିକ ସ୍ୱାଧୀନତା ନ ଥିଲେ ଏହାର ସାର୍ବଭୌମତା ବେଶୀ ଦିନ ସ୍ଥାୟୀ ହୋଇ ରହିପାରେ ନାହିଁ । ସେଥିପାଇଁ ଭାରତର ପ୍ରତ୍ୟେକ ନାଗରିକ ଯେପରି ଜୀବନ ଧାରଣର ମୌଳିକ ଆବଶ୍ୟକତା ଖାଦ୍ୟ, ବାସ ଓ ବସ୍ତ୍ରରେ ସ୍ୱାଶ୍ରୟୀ ହୁଅନ୍ତି, ସେଥିପାଇଁ ସେ ଜୀବନରେ ସବୁଠାରୁ ବଳି ଅଧିକ ଗୁରୁତ୍ୱ ଦେଇ ଯାଇଅଛନ୍ତି । କାରଣ ସେ ଭଲ ରୂପେ ବୁଝିପାରିଥିଲେ ଯେ ଏହିପରି ଏକ ସ୍ୱାବଲମ୍ବୀ ରାଷ୍ଟ୍ର ଗଢ଼ିବାରେ ହିଁ ସେ ତାଙ୍କ ସତ୍ୟ ଅହିଂସାର ରାଜ୍ୟ ସହଜରେ ଗଠନ କରିପାରିବେ । କିନ୍ତୁ

ଦେଶର ପ୍ରତ୍ୟେକ ନାଗରିକ ସ୍ୱାଶ୍ରୟୀ ହେବା ପାଇଁ ଉଦ୍ୟମ ନ ଚଳାଇଲେ ସମଗ୍ର ରାଷ୍ଟ୍ର ସ୍ୱାଶ୍ରୟୀ ହୋଇ ନ ପାରେ । କାରଣ ଲୋକମାନଙ୍କୁ ନେଇକରି ତ ରାଷ୍ଟ୍ର ଗଠିତ ! ଲୋକମାନଙ୍କର ଉଦ୍ୟମ ଓ ଇଚ୍ଛା ବିରୁଦ୍ଧରେ ରାଷ୍ଟ୍ର କିଛି କରିପାରିବା ସମ୍ଭବ ନୁହେଁ । ତେଣୁ ସେ ବ୍ୟକ୍ତି-ସ୍ୱାବଲମ୍ବନ ଉପରେ ରାଷ୍ଟ୍ର-ସ୍ୱାବଲମ୍ବନଠାରୁ ଅଧିକ ଗୁରୁତ୍ୱ ଦେଇଯାଇଛନ୍ତି । ଆଞ୍ଚଳିକ ସ୍ୱାବଲମ୍ବନ-ଶୀଳତା ଆଣିବାକୁ ହେଲେ ଆମ୍ଭମାନଙ୍କୁ ସରଳ ଜୀବନଯାପନ କରିବାକୁ ହେବ । ଯେତେ ଦୂର ସମ୍ଭବ ସ୍ଥାନୀୟ ଉତ୍ପାଦନ ଦ୍ୱାରା ଆମର ଅଭାବ ମୋଚନ କରିବାକୁ ହେବ । ଏଥିପାଇଁ ଯଥେଚ୍ଛାଚାରର ଖର୍ଚ୍ଚ କରି ଉଡ଼ାଇଲେ ଆଉ ଚଳିବ ନାହିଁ ।

ପ୍ରତ୍ୟେକ ଦେଶ ଓ ଦେଶବାସୀ ସ୍ୱାବଲମ୍ବୀ ହେବାକୁ ଚେଷ୍ଟା ନ କରୁଥିବାରୁ ହିଁ ସମାଜରେ ଶୋଷଣ ପୂରି ରହିଛି । ଆଜି ତଥାକଥିତ ସଭ୍ୟ ଦେଶମାନେ ସେମାନଙ୍କର ଜୀବନ-ଧାରଣର ମାନ ବଢ଼ାଇବା ଉଦ୍ଦେଶ୍ୟରେ ଅନ୍ୟ ଦୁର୍ବଳ ରାଜ୍ୟମାନଙ୍କୁ କରଗତ କରି ଶୋଷଣ କରିବାରେ ଲାଗିଛନ୍ତି । କିପରି ଅନ୍ୟ ରାଜ୍ୟକୁ ନିଜ ଅକ୍ତିଆରରେ ରଖି ଉଦ୍‌ବୃତ୍ତ ଜିନିଷ ସେଠାରେ କଟାଇବାକୁ ହେବ, ସେଥିପାଇଁ ସେମାନେ ବଡ଼ ବ୍ୟଗ୍ର ଓ ବ୍ୟାକୁଳ । ଏହାର ଅବଶ୍ୟମ୍ଭାବୀ ପରିଣତି ସ୍ୱରୂପ ରାଜ୍ୟ ରାଜ୍ୟ ମଧ୍ୟରେ ଆଜି ଯୁଦ୍ଧ ବିଗ୍ରହ ଓ ସମଗ୍ର ପୃଥିବୀରେ ଅଶାନ୍ତି, ଅସନ୍ତୋଷ ଲାଗି ରହିଛି । ଆଉ ମଧ୍ୟ ବ୍ୟବସାୟୀଙ୍କ ଦାଉରୁ ଆଜିକାଲି ଖାଣ୍ଟି ଖାଦ୍ୟ ଜିନିଷ ପ୍ରାୟ ମିଳୁନାହିଁ । ଫଳରେ ଜାତୀୟ ସ୍ୱାସ୍ଥ୍ୟରେ ଆଞ୍ଚ୍ ଆସୁଛି । ପ୍ରତ୍ୟେକ ଲୋକ

ଖାଦ୍ୟ ଜିନିଷରେ ସ୍ୱାବଲମ୍ବୀ ହୋଇପାରିଲେ, ଏପରି ସ୍ୱାସ୍ଥ୍ୟହାନି ଘଟନ୍ତା ନାହିଁ ।

ତେଣୁ ଗାନ୍ଧିଜୀ ତାଙ୍କ ରାମରାଜ୍ୟ ଅର୍ଥାତ୍ ଶ୍ରେଣୀ ଓ ଶୋଷଣହୀନ ସମାଜ ଗଠନ କରିବାର କଳ୍ପନା କଲାବେଳେ ଏହି ସ୍ୱାବଲମ୍ବନ ଦିଗ ଉପରେ ଅଧିକ ଗୁରୁତ୍ୱ ଦେଇ ଅଛନ୍ତି । ସେ କହିଛନ୍ତି ଯେ ନିଜ ଉପରେ ନିଜେ ନିର୍ଭର କରିବାକୁ ଚେଷ୍ଟା ନ କରି ଯଦି ଭାରତ ପରର ହାତମୁଠାକୁ ଗୃହିଁ ବସେ, ତା' ହେଲେ ତା'ର ନବଲବ୍ଧ ସ୍ୱାଧୀନତା ବିପନ୍ନ ହେବ । ଅନ୍ୟ ଦେଶର ଜିନିଷ ଉପରେ ନିର୍ଭର କରିବା ଅର୍ଥ ତାହାର ପ୍ରଭୁତ୍ୱକୁ ସ୍ୱୀକାର କରିବା । ଏହି ଅର୍ଥନୈତିକ ପରାଧୀନତା ଫଳରେ କେତେ କେତେ ଦେଶ ସେମାନଙ୍କର ରାଜନୈତିକ ସ୍ୱାଧୀନତାକୁ ମଧ୍ୟ ହରାଇ ବସିଥିବାର ଭୂରି ଭୂରି ପ୍ରମାଣ ଇତିହାସର ପୃଷ୍ଠା ଲେଉଟାଇଲେ ମିଳିପାରିବ ।

କେତେକ ଲୋକ ଏ ସମ୍ପର୍କରେ ମତ ପ୍ରକାଶ କରି କହନ୍ତି ଯେ ପ୍ରତ୍ୟେକ ଦେଶ ସ୍ୱାବଲମ୍ବୀ ହେବାକୁ ଚେଷ୍ଟା କଲେ ପୃଥିବୀର ବାଣିଜ୍ୟ ବ୍ୟବସାୟ ବନ୍ଦ ହୋଇଯିବ । ଫଳରେ ଦେଶ ଦେଶ ମଧ୍ୟରେ ଥିବା ଘନିଷ୍ଠ ସମ୍ପର୍କ ଆଉ ରହିବ ନାହିଁ ଓ ଲୋକଙ୍କର ଏକୁଟିଆ ମନୋଭାବ ବୃଦ୍ଧି ପାଇବ । କିନ୍ତୁ ଏହା ଠିକ୍ ନୁହେଁ; ପୃଥିବୀ ବର୍ତ୍ତମାନ ଯେଉଁ ଅବସ୍ଥାକୁ ଆସିଲାଣି ସେଥିରେ ଦେଶ ଦେଶ ମଧ୍ୟରେ ଆଉ ବିଚ୍ଛିନ୍ନ ମନୋଭାବ ଦେଖାଦେବା ସମ୍ଭବ ନୁହେଁ । ଆଉ ମଧ୍ୟ ଦେଶ ଦେଶ ମଧ୍ୟରେ ଯେ ବ୍ୟବସାୟ ବାଣିଜ୍ୟ ପୂରାପୂରି ବନ୍ଦ ହୋଇଯିବ, ଗାନ୍ଧିଜୀ ତାହା ଗୃହୁଁ ନ ଥିଲେ ପ୍ରତ୍ୟେକ ଦେଶ ଯେପରି ଜୀବନଧାରଣର ମୌଳିକ ଆବଶ୍ୟକତା

ପାଇଁ ପରଠାରେ ହାତପାତି ନ ରହନ୍ତୁ, ସେଥିପାଇଁ ସେ ଯୋର ଦେଇଛନ୍ତି । କାରଣ ଅନେକ ସମୟରେ ଖାଦ୍ୟବସ୍ତୁ ପ୍ରଭୃତି ଜିନିଷ ପାଇଁ ପର ଉପରେ ନିର୍ଭର କରି ନିରଣ ହେଲେ ଦେଶ ଦେଶ ମଧ୍ୟରେ ତିକ୍ତଭାବ ବଢ଼ୁଥିବାର ଦେଖାଯାଉଛି । ଫଳରେ କ୍ଷମତାଶାଳୀ ଦେଶମାନେ ଅନ୍ୟାନ୍ୟ ଦେଶକୁ କୌଣସି ଉପାୟରେ ହାତମୁଠାରେ ରଖି ସେମାନଙ୍କ ମୌଳିକ ଆବଶ୍ୟକତା ମେଣ୍ଟାଇବାକୁ ଚେଷ୍ଟା କରୁଛନ୍ତି । ବାସ୍ତବିକ ଯେଉଁଠି ଦିଆନିଆର ସମ୍ପର୍କ, ସେଠାରେ ହୃଦୟର ସମ୍ପର୍କ କମ୍ ଥାଏ । ଦେଶ ଦେଶ ମଧ୍ୟରେ ଆଧ୍ୟାତ୍ମିକ ସମ୍ପର୍କର ବିକାଶ ସାଧନ କରିବା ଥିଲା ଗାନ୍ଧିଜୀଙ୍କ ଜୀବନର ସ୍ୱପ୍ନ । କାରଣ ଏହି ସ୍ୱପ୍ନ ସଫଳ ହେଲେ ହିଁ ଧରା-ସ୍ୱର୍ଗ ସମ୍ଭବ ହେବ । ତେଣୁ କେବଳ ଉଦ୍‌ବୃତ୍ତ ଜିନିଷରେ ଦେଶ ଦେଶ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଚଳାଇବା ଦିଗରେ ଗାନ୍ଧିଜୀଙ୍କର କୌଣସି ଆପତ୍ତି ନ ଥିଲା । ଗାନ୍ଧିଜୀ ବିଶ୍ୱାସୁ ଥିଲେ ଯେ, ପ୍ରତ୍ୟେକ ଦେଶ ଆତ୍ମନିର୍ଭରଶୀଳ ହୋଇପାରିଲେ ହିଁ ଦେଶ ଦେଶ ମଧ୍ୟରେ ସ୍ନେହ ସଦ୍ଭାବ ବୃଦ୍ଧି ପାଇବ ଓ ପୃଥିବୀରୁ ଅଶାନ୍ତି, ଅସନ୍ତୋଷ ଅନେକ ପରିମାଣରେ ଦୂର ହୋଇଯିବ ।

କେତେଗୁଡ଼ିଏ ଗାଁକୁ ଏକାଠି କରି ସ୍ୱାବଲମ୍ବୀ ଅଞ୍ଚଳ ଗଢ଼ିବା ପାଇଁ ଗାନ୍ଧିଜୀ ଚାହୁଁଥିଲେ । ଯେତେ ଦୂର ସମ୍ଭବ ଏହି ଗାଁଗୁଡ଼ିକ ନିର୍ଦ୍ଦିଷ୍ଟ ଯୋଜନାନୁଯାୟୀ ସେମାନଙ୍କ ଉତ୍ପାଦନ ଉପରେହିଁ ନିର୍ଭର କରିବେ । ବାହାରୁ ଏହି ଅଞ୍ଚଳକୁ ଜିନିଷପତ୍ର ଆସିବାରେ କଟକଣା ପ୍ରୟୋଗ କରାଯିବ । ଏହା ଫଳରେ ପ୍ରତ୍ୟେକ ଅଞ୍ଚଳର ଲୋକେ ଯଥେଷ୍ଟ କାମ ପାଇବେ । ସମାଜରୁ

ଅର୍ଥନୈତିକ ଶୋଷଣ ଅନେକ ପରିମାଣରେ କମିଯିବ । ଏଥିପାଇଁ ବିଭିନ୍ନ ଅଞ୍ଚଳରେ ଗ୍ରାମ-ସମବାୟ-ସଂଗଠନ ସବୁ ଗଢ଼ାଯିବା ଉଚିତ । ଆଞ୍ଚଳିକ ଆବଶ୍ୟକତା ଦୃଷ୍ଟିରୁ ବିଭିନ୍ନ ଜିନିଷର ଉତ୍ପାଦନ ଦାୟିତ୍ୱ ସେମାନଙ୍କୁ ବହନ କରିବାକୁ ହେବ ।

କେତେକ ସମାଲୋଚକଙ୍କ ମତ ଯେ ସ୍ୱାବଲମ୍ବୀ ଅଞ୍ଚଳ ଗଠନଦ୍ୱାରା ଲୋକଙ୍କ ମଧ୍ୟରେ ବିଚ୍ଛିନ୍ନ ମନୋଭାବ ବିଶେଷ ଭାବରେ ଦେଖାଯିବ । କିନ୍ତୁ ଗାଁ ଗାଁରେ ରେଡ଼ିଓ, ଟେଲିଫୋନ ଓ ଗମନାଗମନର ସୁବିଧା କରାଗଲେ ଲୋକେ ସମଗ୍ର ଦୁନିଆ ସହିତ ଅବିଚ୍ଛିନ୍ନ ଭାବରେ ରହିପାରିବେ । ସହରରେ ପକ୍କା ପିଚୁରାସ୍ତା ତିଆରି ନ ହୋଇ ଜାତୀୟ ଅର୍ଥ ଗାଁ ରାସ୍ତା ଓ ନଦୀମାନଙ୍କର ପୋଲ ଇତ୍ୟାଦି ତିଆରି କରିବାରେ ବିନିଯୁକ୍ତ ହେବା ଉଚିତ ।

ଗାନ୍ଧୀଜୀ ଅନ୍ୟ ଏକ ଦୃଷ୍ଟିକୋଣରୁ ଏହି ସ୍ୱାବଲମ୍ବୀ ଅଞ୍ଚଳ ଗଠନର ଯଥାର୍ଥତା ଉପଲବ୍ଧି କରିଛନ୍ତି । ଦୂର ଅଞ୍ଚଳର ଉତ୍ପାଦିତ ଦ୍ରବ୍ୟ ସମ୍ପର୍କରେ ଆମର କୌଣସି ଧାରଣା ନ ଥାଏ । ଆମ୍ଭେ ତାହାକୁ କେବଳ କିଣିଦେଉ । କିନ୍ତୁ ଉତ୍ପାଦନ ଯଦି ଅହିଂସ ଉପାୟରେ ନ ହୋଇଥାଏ, ତା'ହେଲେ ଏପରି କିଣିବା ଦ୍ୱାରା ଆମ୍ଭେମାନେ ପରୋକ୍ଷରେ ହିଂସା ଓ ଶୋଷଣର ସମର୍ଥକ ହୋଇ ଉଠୁ । ଉଦାହରଣ ସ୍ୱରୂପ ଆମ୍ଭେ ବିଡ଼ି ବ୍ୟବହାର କରୁ । କିନ୍ତୁ ଅନେକ ସ୍ଥାନରେ ଅଳ୍ପ ବୟସ୍କ ବାଳକ ବାଳିକା ଶିକ୍ଷାଦୀକ୍ଷାରେ ଜଳାଞ୍ଜଳି ଦେଇ କେବଳ ଅର୍ଥଲୋଭରେ ବିଡ଼ି ବଳିବାକୁ ବାଧ୍ୟ ହୁଅନ୍ତି । ଆମେ ଏହି ବିଡ଼ି ବ୍ୟବହାର କରିବାଦ୍ୱାରା ଶିଶୁ-

ଶୋଷଣର ସମର୍ଥକ ହୋଇ ଉଠୁ। ସେହିପରି ମଧ୍ୟ ଅନେକ ଉର୍ବର ଜମିରେ ଆଜିକାଲି ଲାଭ ଦୃଷ୍ଟିରୁ ଧୂଆଁ ପତ୍ର ଚାଷ ହେଉଅଛି। ଆମେ ତାହା ବ୍ୟବହାର କରିବା ଦ୍ୱାରା ଦେଶର ଖାଦ୍ୟସଙ୍କଟରେ ସାହାଯ୍ୟ କରୁ। ଯଦି ସ୍ଥାନୀୟ ଉତ୍ପାଦନ ଉପରେ ଆମେ ନିଜର ଚଳାଚଳ ପାଇଁ ଅଧିକ ପରିମାଣରେ ନିର୍ଭର କରୁ, ତା'ହେଲେ କୌଣସି ଦ୍ରବ୍ୟର ଉତ୍ପାଦନ ସହିତ ଶ୍ରମିକର ଲହୁଲୁହ ମିଶି ରହିଛି କି ନାହିଁ ତାହା ସହଜରେ ଜାଣିପାରୁ। ତେଣୁ ଆମେ ଯଦି ଏକଯୁଟ ହୋଇ ଏପରି ଜିନିଷ ବ୍ୟବହାର ନ କରିବାକୁ ଅଣ୍ଟାଭିଡ଼ ବାହାରିବା, ତାହେଲେ ଦେଶର ଅର୍ଥନୈତିକ ଶୋଷଣ ଅନେକ ପରିମାଣରେ ଦୂର ହୋଇ ପାରିବ। ଦେଶ ହସି ଉଠିବ।

## ସୁଚିନ୍ତିତ ଅର୍ଥନୀତି

ଦେଶର ଅର୍ଥନୈତିକ ବିକାଶ ସାଧନ ପାଇଁ ସୁଚିନ୍ତିତ ଅର୍ଥନୈତିକ ଯୋଜନା ନିତାନ୍ତ ଆବଶ୍ୟକ। ଏହି ଉଦ୍ଦେଶ୍ୟରେ ଭାରତ ସରକାର ଗୋଟିଏ ପାଞ୍ଚବାର୍ଷିକ ଯୋଜନା ତିଆରି କରିଛନ୍ତି। ଏ ସମ୍ବନ୍ଧରେ ଗାନ୍ଧୀଜୀଙ୍କର ଗୋଟିଏ ଦୁଇଟି ଉପଦେଶ ଅବଶ୍ୟ ବିଚାର୍ଯ୍ୟ।

ଆଜିକାଲି ଭାରତର ଶତକଡ଼ା ସତୁରି ଭାଗ ଲୋକ ଜୀବନଧାରଣ ପାଇଁ ପ୍ରତ୍ୟକ୍ଷ ଭାବରେ କୃଷି ଉପରେ ନିର୍ଭର କରନ୍ତି। ଏହାଦ୍ୱାରା ଜମିସବୁ ଖଣ୍ଡ ଖଣ୍ଡ ହୋଇ ମୁଣ୍ଡପିଛା ଉତ୍ପାଦନ ପରିମାଣ କମିଯାଉଛି। ଏହି ଅଳ୍ପ ଜମିର ଉତ୍ପାଦନ ପରିମାଣ

ଚାଷୀକୁ ବର୍ତ୍ତମାନ୍ ଖାଦ୍ୟ ଯୋଗାଇ ପାରୁନାହିଁ । ଚାଷୀ ଖାଇବାକୁ ନ ପାଇ ଦୀର୍ଘ ଉପାସରେ ଅସ୍ଥି କଙ୍କାଳସାର ହୋଇ ଉଠୁଛି । କୃଷିର ଯଥାର୍ଥ ଉନ୍ନତି ସାଧନ କରିବାକୁ ହେଲେ ଏହି ଦୁର୍ଗତିକୁ ସୁଧାରିବାକୁ ହେବ ।

ଭାରତ ବର୍ତ୍ତମାନ ଅନେକ ଜିନିଷ ବିଦେଶରୁ ଆମଦାନି କରୁଛି । କିନ୍ତୁ ଏକ ସୁଚିନ୍ତିତ ଯୋଜନା ଫଳରେ ଏହିସବୁ ଜିନିଷକୁ ଆମ ଦେଶରେ ହିଁ ଉତ୍ପାଦନ କରିବାକୁ ହେବ । ବ୍ରିଟିଶ ସରକାରଙ୍କ ଦେଡ଼ଶହ ବର୍ଷ ରାଜୁତି ଫଳରେ ଆମ୍ଭେମାନେ ଆମ୍ଭମାନଙ୍କର ପାରମ୍ପରିକ କଳାନୈପୁଣ୍ୟ ହରାଇ ବସିଛୁ । ଅନନ୍ୟୋପାୟ ହୋଇ ଆମ୍ଭେମାନେ କେବଳ ଜମିଖଣ୍ଡିକୁ କାମୁଡ଼ି ଧରିଛୁ । ଏହି ଦୁର୍ଗତିରୁ ମୁକ୍ତିଲାଭ କରିବାକୁ ହେଲେ ଆମଦେଶ ଯେପରି ପୂର୍ବପରି ହସ୍ତଶିଳ୍ପରେ ପରାକାଷ୍ଠା ଲାଭ କରିପାରେ, ସେଥିପ୍ରତି ଜାତିର ଉଦ୍ୟମ ହେବା ଆବଶ୍ୟକ ।

ବାଣିଜ୍ୟ ବ୍ୟବସାୟ ଉପରେ ସରକାରଙ୍କର ପୂରା କଟକଣା ରହିବା ଉଚିତ । ଦେଶରୁ ଯେପରି ଗୋଟିଏ ଟଙ୍କା ବିଦେଶକୁ ଅଯଥା ଚାଲି ନ ଯାଏ, ସେଥିପ୍ରତି ସରକାରଙ୍କୁ କଡ଼ା ଦୃଷ୍ଟି ଦେବାକୁ ହେବ । ଯେତେ ଦୂର ସମ୍ଭବ ସରକାର ସ୍ୱାବଲମ୍ବୀ ଅଞ୍ଚଳମାନ ଗଢ଼ି ସେହି ଅଞ୍ଚଳର ରାଜସ୍ୱକୁ ସେଠାର ଲୋକ-କଲ୍ୟାଣକର କାର୍ଯ୍ୟରେ ଲଗାଇବା ଉଚିତ । ସମୁଦାୟ ଦେଶର ଚାହିଦା ଅନୁଯାୟୀ ଯେପରି ଦେଶର ଉତ୍ପାଦନରୁ ଯୋଗାଣ ବ୍ୟବସ୍ଥା ହୋଇପାରେ, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ତା ଅର୍ଥ କେବଳ ବିଦେଶରୁ ଆମଦାନିକୁ ଅଭିଭାବରେ

ବନ୍ଦ କରିଦେଲେ ଚଳିବ ନାହିଁ । ଆମ୍ଭମାନଙ୍କୁ ଏଥିପାଇଁ ଅଧିକ ପରିମାଣରେ ଦେଶର କୁଟୀରଶିଳ୍ପ ଉପରେ ନିର୍ଭର କରିବାକୁ ହେବ । ଅଧିକ ସଂଖ୍ୟକ ଲୋକ ଯେପରି ଜୀବିକାର୍ଜନ ପାଇଁ କୁଟୀରଶିଳ୍ପ ପ୍ରତି ଆକୃଷ୍ଟ ହୁଅନ୍ତି, ସେପରି ବ୍ୟବସ୍ଥା କରିବାକୁ ହେବ । ଆଜି ମଧ୍ୟ କୁଟୀରଶିଳ୍ପର ଉତ୍ପାଦନ ପରିମାଣ ଯେପରି ଅମର ବୃଦ୍ଧିହୋଇ ପାରେ, ସେଥିପ୍ରତି ମନପ୍ରାଣ ଦେଇ ଉଦ୍ୟମ କରାଯିବା ଉଚିତ । ଅବଶ୍ୟ ଏହା ବ୍ୟତୀତ କେତେକ ଜିନିଷକୁ ମଧ୍ୟ ଜାତୀୟକୃତ କଳକାରଖାନାଦ୍ୱାରା ଉତ୍ପାଦନ କରିବାକୁ ହେବ । ମୋଟ ଉପରେ ଦେଶର ସ୍ୱାବଲମ୍ବନ, ବେକାର ସମସ୍ୟାର ସମାଧାନ, ଲୋକମାନଙ୍କ ଆର୍ଥିକ ଅବସ୍ଥାର ଉନ୍ନତି ସାଧନ—ଏସବୁକୁ ଦୃଷ୍ଟି ଦେଇ ଆମ୍ଭମାନଙ୍କୁ ଦେଶର ଉତ୍ପାଦନ ପରିମାଣ ବଢ଼ାଇବାକୁ ହେବ ।

ଆମଦେଶରେ କୃଷି ପାଇଁ କେବଳ କୃଷି କରିବାର ଯେଉଁ ପରମ୍ପରା ରହିଛି, ତାକୁ ବଦଳାଇ ଦିଆଯିବା ଉଚିତ । ଦେଶ ଯେପରି ଖାଦ୍ୟରେ ପୂରାପୂରି ସ୍ୱାବଲମ୍ବୀ ହୋଇପାରେ, ସେଥିପ୍ରତି ପ୍ରାଣାନ୍ତ ଉଦ୍ୟମ ହେବା ଦରକାର । ଏ ଦିଗରେ ଆମ୍ଭମାନଙ୍କୁ ଚୀନ ଦେଶର ଆଦର୍ଶ ଗ୍ରହଣ କରିବାକୁ ହେବ । ଅଳ୍ପ ଜମିରୁ ଯେପରି ଅଧିକ ଖାଦ୍ୟଶସ୍ୟ ଉତ୍ପାଦିତ ହୋଇପାରିବ, ସେଥିଲାଗି ଯୋଜନା ଓ ଉଦ୍ୟମ ହେବା ଲୋଡ଼ା ।

କୃଷିର ବିକାଶ ଦିଗରେ ପ୍ରଥମେ ଆମ ଦେଶ ପାଇଁ ଜଳସେଚନର ସୁବ୍ୟବସ୍ଥା କରିବାକୁ ହେବ । ଏହା ଅତି ଜରୁରୀ । ଭାରତର ଚାଷୀ ପାଣିମୁନ୍ଦାଏ ସୁବିଧାରେ ପାଇଲେ ଅଳସୁଆ ହୋଇ କଦାପି ବସିରହନ୍ତା ନାହିଁ । ଏହା ବାଦ୍ ସାଧାରଣ

ଚାଷୀ ଯେପରି ବୈଜ୍ଞାନିକ ଚାଷପ୍ରଣାଳୀକୁ ଭଲଭାବରେ ବୁଝି ତାହାକୁ ଉତ୍ପାଦନବୃଦ୍ଧି ବାଟରେ ପ୍ରୟୋଗ କରେ, ସେଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ସବୁ ଗ୍ରହଣ କରିବାକୁ ହେବ । ଆମ ଦେଶର ଅଧିକାଂଶ ଲୋକ କୃଷି-ଜୀବୀ; ତେଣୁ କୃଷି-ବିଜ୍ଞାନକୁ ସାଧାରଣ ଶିକ୍ଷାର ଏକ ଅପରିହାର୍ଯ୍ୟ ଅଙ୍ଗରୂପେ ଗ୍ରହଣ କରିବାକୁ ହେବ । ଏହା ବ୍ୟତୀତ ରୁଷ୍ ଦେଶ ପରି ଦେଶ ସାରା "କୃଷି-ଭବନ" ସବୁ ସ୍ଥାପନ କରିବାକୁ ହେବ । ଏଥିରେ ବିଭିନ୍ନ ପ୍ରଦର୍ଶନୀମାନ ଖୋଲି ସାଧାରଣ ଚାଷୀଙ୍କୁ କୃଷି-ବିଜ୍ଞାନ ଶିକ୍ଷା ଦିଆଯିବା ଦରକାର । ସାଧାରଣ ଚାଷୀର ଜମି ଉପରେ ଦାବୀ ସ୍ୱୀକୃତ ହେବା ଉଚିତ । ଯେଉଁ ଲୋକ ଦେଶର ଉତ୍ପାଦନ ବୃଦ୍ଧିରେ ଭାଗୀଦାର ନୁହେଁ, ତାହାର ଜମି ବା ଉତ୍ପାଦନ କୌଣସିଥିରେ ଦାବୀ ରହିବା ଉଚିତ ନୁହେଁ ।

ଦେଶର ଉତ୍ପାଦନ-ବୃଦ୍ଧି ସମ୍ପର୍କରେ ଆମ୍ଭମାନଙ୍କୁ ଗୋଟିଏ କଥା ମନେ ରଖିବାକୁ ହେବ । ଆଜକାଲି ଖାଦ୍ୟଶସ୍ୟର ଅଭାବ ଯୋଗୁ ଲୋକମାନେ ଭୋକ ଉପାସରେ ରହୁଛନ୍ତି । କିନ୍ତୁ ଲାଭଦୃଷ୍ଟିରୁ ଅନେକ ଉର୍ବର ଜମି କେବଳ ଅର୍ଥକରୀ ଫସଲ ଉତ୍ପାଦନରେ ଲାଗୁଅଛି । ଜମି ଉପରେ ରାଷ୍ଟ୍ରର ପୂରା କର୍ତ୍ତୃତ୍ୱ ରହିବା ଦରକାର । ଯେଉଁ ଜମିରେ ଖାଦ୍ୟଶସ୍ୟ ଭଲଭାବରେ ଉତ୍ପନ୍ନ ହୋଇପାରିବ, ସେ ଜମିରେ ଯେପରି ଝୋଟ, ଧୂଆଁପତ୍ର ପ୍ରଭୃତି ଫସଲ ନ ହୁଏ, ସେଥିପ୍ରତି ପୂରା ସରକାରୀ କଟକଣା ପ୍ରୟୋଗ କରାଯିବା ଉଚିତ ।

# ଶିଳ୍ପର କେନ୍ଦ୍ରୀକରଣ ବା ଯନ୍ତ୍ରଶିଳ୍ପ

ଆଧୁନିକ ଯୁଗରେ ଯେଉଁ ଦେଶ ଶିଳ୍ପକ୍ଷେତ୍ରରେ ଅଗ୍ରଗତି କରିପାରୁଛି, ସେହି ଦେଶ ଅଧିକ ଉନ୍ନତ, ଧନଶାଳୀ ଓ କ୍ଷମତାଶାଳୀ ହୋଇ ପାରୁଛି; ତେଣୁ ପ୍ରତ୍ୟେକ ଦେଶ ଶିଳ୍ପପ୍ରଧାନ ହେବା ପାଇଁ ଆଜିକାଲି ଆଗ୍ରହ ପ୍ରକାଶ କରୁଛନ୍ତି । ଦେଶ ଶିଳ୍ପ-ସମୃଦ୍ଧ ହେବାଦ୍ୱାରା ଲୋକଙ୍କର ଆୟ ବଢ଼େ ଓ ଅଧିକ ଉତ୍ପାଦନ ଫଳରେ ଜିନିଷପତ୍ରର ଦରଦାମ୍ କମେ । ଲୋକଙ୍କର କ୍ରୟଶକ୍ତି ବୃଦ୍ଧି ପାଇବା ଫଳରେ ସେମାନେ ଖୁସିବାସିରେ ରହନ୍ତି । ଏହା ଦ୍ୱାରା କେତେକ ମଧ କାମ ପାଇପାରନ୍ତି । ତେଣୁ ଦେଶକୁ ଶିଳ୍ପସମୃଦ୍ଧ କରିବାରେ କାହାର କୌଣସି ଆପତ୍ତି ନାହିଁ । କିନ୍ତୁ ଏହାର ସୁଦୂର ପରିଣତି ସମ୍ପର୍କରେ ଅମ୍ଭମାନଙ୍କୁ ସଚେତ ହେବାକୁ ପଡ଼ିବ । ଅନ୍ୟାନ୍ୟ ଶିଳ୍ପସମୃଦ୍ଧ ଦେଶର ବହୁ ବର୍ଷ-ବ୍ୟାପୀ ଅନୁଭୂତିରୁ ଆମ୍ଭମାନଙ୍କର ଅନେକ କଥା ଶିଖିବାର ଅଛି । ଭାରତ ଯଦି ଏହି ଅନୁଭୂତିରୁ କିଛି ଫାଇଦା ଉଠାଇବାକୁ ଚେଷ୍ଟା ନ କରେ, ତାହେଲେ ପରେ ତାକୁ ଅନୁତାପ କରିବାକୁ ପଡ଼ିବ । ତେଣୁ ଏ ସମ୍ପର୍କରେ ସବୁ ବିଷୟ ଭିନ୍ନଭିନ୍ନ ଭାବରେ ବିଚାର କରି ଆମକୁ ଭବିଷ୍ୟତର କର୍ମପନ୍ଥା ସ୍ଥିର କରିବାକୁ ହେବ ।

ପୂର୍ବର ଶିଳ୍ପସମୃଦ୍ଧ ଦେଶମାନେ ସେମାନଙ୍କର ବହୁ ଉତ୍ପାଦନକୁ ଅନ୍ୟାନ୍ୟ ଅନୁନ୍ନତ ଦେଶମାନଙ୍କୁ ଶୋଷଣ କରିବାର ଅସ୍ତ୍ରରୂପେ ପ୍ରୟୋଗ କରିଛନ୍ତି । କିନ୍ତୁ ସେ ଯୁଗ ଏବେ ପ୍ରାୟ ଆଉ ନାହିଁ । ପ୍ରତ୍ୟେକ ଦେଶ ଆଜିକାଲି ଚେତିଲେଣି ଓ ଏହି

ଶୋଷଣ ବିରୁଦ୍ଧରେ ଅଗ୍ନୋତ୍ତୋଳନ କଲେଣି । ତେଣୁ ଦେଶର ଶିଳ୍ପରେ କେତେକ କଟକଣା ପ୍ରୟୋଗ କରି ଲୋକସାଧାରଣଙ୍କର ଆବଶ୍ୟକତା ଅନୁଯାୟୀ ଉତ୍ପାଦନ କରିବାକୁ ହେବ । କାରଣ ବହୁ ଉତ୍ପାଦନ କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାର ଏକ ପ୍ରଧାନ ଲକ୍ଷଣ । ଏହି ବହୁ ଉତ୍ପାଦନରେ ରାଷ୍ଟ୍ରର ନିୟନ୍ତ୍ରଣ ନ ରହିବାରୁ ପୃଥିବୀରେ ଆଜି ସବୁପ୍ରକାର ବିଭ୍ରାଟ ଘଟୁଛି । ଅବଶ୍ୟ ଏପରି ନିୟନ୍ତ୍ରଣ ବ୍ୟବସ୍ଥା ଅତି ଦୁଃସାଧ୍ୟ ।

ବୃହଦାକାର ଶିଳ୍ପ କାରଖାନାସବୁ ତିଷ୍ଠି ରହିଲେ ପୃଥିବୀରୁ ସାମ୍ରାଜ୍ୟବାଦ ଲୋପ ପାଇପାରିବ ନାହିଁ । କାରଣ ବୃହଦାକାର ଶିଳ୍ପ କଞ୍ଚାମାଲ ପାଇଁ ବହୁ ଦୂର ଦେଶମାନଙ୍କ ଉପରେ ମଧ୍ୟ ନିର୍ଭର କରେ । କଞ୍ଚାମାଲର ନିୟମିତ ଯୋଗାଣ ଚାଲୁ ରଖିବା ପାଇଁ କେନ୍ଦ୍ରୀକୃତ ଶିଳ୍ପ-ପ୍ରଧାନ ଦେଶ ଅନ୍ୟାନ୍ୟ ରାଜ୍ୟକୁ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟା କରନ୍ତି । ଏହାଦ୍ୱାରା ବୃହଦାକାର କଳକାରଖାନାଗୁଡ଼ିକ କଞ୍ଚାମାଲର ଅଭାବରେ ବନ୍ଦ ହୋଇଯିବାର ଆଶଙ୍କା ନ ଥାଏ । ବହୁ ଉତ୍ପାଦନ କେନ୍ଦ୍ରୀକୃତ ଶିଳ୍ପର ପ୍ରଧାନ ଲକ୍ଷଣ । ଉତ୍ପାଦିତ ଦ୍ରବ୍ୟକୁ ବିକ୍ରୀ କରିବା ପାଇଁ ମଧ୍ୟ ସୁଦୂର ପ୍ରସାରିତ ବଜାର ଦରକାର । ଏହି ଉଦ୍ଦେଶ୍ୟରେ ଶିଳ୍ପ-ପ୍ରଧାନ ଦେଶମାନେ ଅନ୍ୟାନ୍ୟ ଶିଳ୍ପାନୁନ୍ନତ ଦେଶଗୁଡ଼ିକୁ କୌଣସି ଉପାୟରେ କବଳିତ କରି ସେଗୁଡ଼ିକୁ ଲାଭକର ବଜାରରେ ପରିଣତ କରନ୍ତି । କେବଳ ଏହି କାରଣରୁ ପୃଥିବୀର ଆଜି ଅନେକ ଦେଶ ପରପଦାନତ ହୋଇ ରହିଛନ୍ତି । ଭାରତ ମଧ୍ୟ ଏପର୍ଯ୍ୟନ୍ତ ପାଶ୍ଚାତ୍ୟ ଦେଶମାନଙ୍କର ଶିକାର ହୋଇ ରହିଥିଲା; ତେଣୁ ଦେଶରେ କେନ୍ଦ୍ରୀକୃତ

ବୃହଦାକାର ଶିଳ୍ପକାରଖାନା ସବୁ ବଞ୍ଚି ରହିଥିବା ପର୍ଯ୍ୟନ୍ତ ପୃଥିବୀରୁ ସାମ୍ରାଜ୍ୟବାଦୀ ମନୋବୃତ୍ତି ଲୋପ ପାଇବା ଅସମ୍ଭବ ।

ଶିଳ୍ପୋନ୍ନତ ଦେଶମାନଙ୍କର ଏହି ସାମ୍ରାଜ୍ୟବାଦୀ ମନୋବୃତ୍ତି ରହିଥିବାରୁ ହିଁ ପୃଥିବୀରେ ଏବେ ଏତେ ଯୁଦ୍ଧ ବିଗ୍ରହ, ଅଶାନ୍ତି, ଅସନ୍ତୋଷ ଲାଗିରହିଛି । ନିଶ୍ଚିହ୍ନ ଦେଶଗୁଡ଼ିକର ରାଜନୈତିକ ଓ ଅର୍ଥନୈତିକ ଅଧିକାର ଲୋପ କରିବା ପାଇଁ ସେମାନେ ନିଜ ନିଜ ମଧ୍ୟରେ କଳିଗୋଳ କରୁଛନ୍ତି । ଏହି କାରଣରୁ ନିକଟ ଅତୀତରେ ଦୁଇ ଦୁଇଟା ମହାଯୁଦ୍ଧ ସମ୍ଭବ ହୋଇଥିଲା ଓ ଆଜି ଏକ ତୃତୀୟ ମହାଯୁଦ୍ଧ ପାଇଁ ପୃଥିବୀ ଏବେ ପ୍ରସ୍ତୁତ ହେବାରେ ବ୍ୟସ୍ତ । ଆଜି ଗୋଟିଏ କଥା ଏହି ଯେ ସାମ୍ରାଜ୍ୟବାଦ ମନୋବୃତ୍ତି ଫଳରେ ଆଧ୍ୟାତ୍ମିକ ଶାନ୍ତିସନ୍ତୋଷ ପୃଥିବୀରେ ଏକ କଥାର କଥା ହୋଇ କେବଳ ରହିଛି । ପରସ୍ପର ମଧ୍ୟରେ ସନ୍ଦେହ, ଭୟ ଓ ଘୃଣା ପୂରିରହିଛି । ମୋଟ ଉପରେ ସଭ୍ୟତା ଓ ସଂସ୍କୃତି ଦୃଷ୍ଟିରୁ ବିଚାର କଲେ ପୃଥିବୀ ଦିନକୁ ଦିନ ରସାତଳଗାମୀ ହେଉଛି ।

କେତେକ ଲୋକ ମତପ୍ରକାଶ କରି କହନ୍ତି, ଯେ ବୃହଦାକାର ଶିଳ୍ପଗୁଡ଼ିକୁ ରଖି ବସ୍ତ୍ର ଉତ୍ପାଦନରେ ସୀମାୟିତ କଟକଣା ପ୍ରୟୋଗ କରାଗଲେ ପୃଥିବୀର ସାମ୍ରାଜ୍ୟବାଦ ଆଜି ସମ୍ଭବ ହୁଅନ୍ତା ନାହିଁ । କିନ୍ତୁ ମିଲ୍ ମାଲିକ ଯନ୍ତ୍ରଶିଳ୍ପର ଚରମ ଉତ୍ପାଦିକା ଶକ୍ତି ଅନୁଯାୟୀ ଅଳ୍ପ ସମୟରେ ଅଧିକ ଉତ୍ପାଦନ କରିବାକୁ ମନ ବଳାଏ । କାରଣ ଯନ୍ତ୍ରଶିଳ୍ପର ବସ୍ତୁ ଉତ୍ପାଦନ ହଠାତ୍ ଅବହେଳିତ ହେଲେ ଶ୍ରମିକମାନଙ୍କର ପାରିଶ୍ରମିକ ଓ ଅନ୍ୟାନ୍ୟ ଖର୍ଚ୍ଚ ବାବଦରେ ଜିନିଷପତ୍ରର ଉତ୍ପାଦନ ଖର୍ଚ୍ଚ

ବଢ଼ିଯିବ, କଳଜାତ ଦ୍ରବ୍ୟଗୁଡ଼ିକ ମହଙ୍ଗା ହୋଇଯିବ ଏବଂ ପରିଣାମରେ ପୃଥିବୀ-ବଜାରରେ ସେସବୁ ପ୍ରତିଦ୍ୱନ୍ଦ୍ୱିତା କରିପାରିବ ନାହିଁ । ସ୍ୱାମୀସ୍ବ ଲୋକମାନଙ୍କର ଦୃଷ୍ଟିଦାଦୃଷ୍ଟିରୁ ଉତ୍ପାଦନ କଲେ ମିଲମାଲିକର ବହୁତ କ୍ଷତି ହେବ । ଏହି କାରଣରୁ ମିଲ୍‌ମାଲିକ ବୃଦ୍ଧିଦା ଦୃଷ୍ଟିରୁ ଉତ୍ପାଦନ କରେ ନାହିଁ । ପ୍ରଥମେ ଯଥାଶକ୍ତି ବହୁ ଉତ୍ପାଦନ କରି ପରେ ଯେ କୌଣସି ଉପାୟରେ ସେସବୁ ଜିନିଷ ପାଇଁ ବଜାର ସୃଷ୍ଟି କରେ । ଅନ୍ୟାନ୍ୟ ଦେଶରେ ବଜାର ସୃଷ୍ଟି କରିବାକୁ ହେଲେ ହିଁ ହିଂସାର ଆଶ୍ରୟ ନେବାକୁ ହେବ । ମିଲମାଲିକ ସେବାଭାବରେ ପ୍ରଣୋଦିତ ହୋଇ ଲୋକଙ୍କ ମୂଳଦାଦୃଷ୍ଟିରୁ ଉତ୍ପାଦନ କରିବା ପାଇଁ ଆଶା କରିବା ବିଡ଼ମ୍ବନା ମାତ୍ର ।

ଯନ୍ତ୍ରଶିଳ୍ପର ବିକାଶ ହେତୁ ଆଜ ପୃଥିବୀରେ ମାନବିକତା ପ୍ରାୟ ଲୋପ ହୋଇଯିବାକୁ ବସିଛି । ଶିଳ୍ପୋନ୍ନତ ଦେଶର ମିଲ୍‌ମାଲିକମାନେ ଲାଭଦୃଷ୍ଟିରୁ ହିଁ ସବୁ କଥା ବିଚାର କରୁଛନ୍ତି ଏବଂ ବ୍ୟକ୍ତିଗତ ଲାଭ ପାଇଁ ଦେଶରେ ଦୁର୍ଭିକ୍ଷ ସୃଷ୍ଟି କରିବାକୁ ସେମାନେ ମଧ୍ୟ ପଛଉ ନାହାନ୍ତି । କେତେକ ବ୍ୟବସାୟୀ ଓ ମିଲ-ମାଲିକ ଉଦ୍‌ବୃତ୍ତ ଜିନିଷକୁ ନଷ୍ଟ କରି ଦେଇ ଓ ଅନ୍ୟ କେତେକ ଜିନିଷକୁ ଏକଚାଟିଆ ଅଧିକାର କରି ବଜାରରେ ସେସବୁ ଜିନିଷର ଅଭାବ ସୃଷ୍ଟିକରନ୍ତି । ଏହା ଫଳରେ ବୃଦ୍ଧିଦାର ଜିନିଷପତ୍ରର ଦରଦାମ ବଢ଼ିଯାଏ । ଲାଭଖୋର ବ୍ୟବସାୟୀମାନେ ଏହାଦ୍ୱାରା ଅନ୍ୟମାନଙ୍କୁ ଶୋଷଣ କରି ଲାଭବାନ୍ ହୁଅନ୍ତି । ଏପରି ବ୍ୟବସ୍ଥା ଶୀଘ୍ର ବଦଳିବା ଦରକାର ।

କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥା ଗଣତନ୍ତ୍ରଶାସନର ପୂର୍ଣ୍ଣ ବିରୋଧୀ । ଅର୍ଥନୀତିକ୍ଷେତ୍ରରେ କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥା ଯାହା, ରାଜନୀତି କ୍ଷେତ୍ରରେ ଏକଚ୍ଛତ୍ରବାଦ ବି ସେହିଆ । କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାର ବିକାଶ ପାଇଁ ଅଳ୍ପ କେତେକ ଲୋକଙ୍କ ହାତରେ କ୍ଷମତାର କେନ୍ଦ୍ରୀକରଣ ନିତାନ୍ତ ଆବଶ୍ୟକ । ତେଣୁ ଅସଲ ଗଣତନ୍ତ୍ର ଶାସନ ଏଭଳି ଦେଶରେ ମୁଣ୍ଡଟେକି ଉଠିବା ସମ୍ଭବ ନୁହଁ । ଆଜି ମଧ୍ୟ କଳକାରଖାନା ମାଲିକର କଥାହିଁ ନିୟମ ଓ ସେହି ଆଦେଶକୁ ବେଦବାକ୍ୟ ପରି ଶ୍ରମିକମାନେ ମାନିବାକୁ ଏକରକମ ବାଧ୍ୟ । ତେଣୁ ଯନ୍ତ୍ରଶିଳ୍ପ ଗଣତନ୍ତ୍ର-ବ୍ୟବସ୍ଥାର ପୂର୍ଣ୍ଣ ବିରୋଧୀ ।

ଶିଳ୍ପର କେନ୍ଦ୍ରୀକରଣଦ୍ୱାରା କ୍ଷମତା ଓ ଧନ ମଧ୍ୟ ସ୍ୱତଃ କେନ୍ଦ୍ରୀକୃତ ହୋଇଯାଏ । ଏହାଦ୍ୱାରା ସମାଜରେ ଧନୀ, ଗରିବ ଅର୍ଥାତ୍ ଶୋଷକ ଶୋଷିତ ଶ୍ରେଣୀର ଉଦ୍ଭବ ହୁଏ ଓ ଦେଶର ଧନୀମାନେ ଅଧିକ ଧନୀ ଓ ଗରିବମାନେ ଅଧିକ ଗରିବ ହୁଅନ୍ତି । ଦେଶର ଧନସମ୍ପତ୍ତି କେତେକ ପୁଞ୍ଜିପତି ଓ ଶିଳ୍ପମାଲିକଙ୍କ ଠାରେ ପୁଞ୍ଜୀଭୂତ ହୋଇ ରହିବା ଦ୍ୱାରା ଦେଶର ଅଧିକାଂଶ ଲୋକଙ୍କର କ୍ରୟଶକ୍ତି କମିଯାଏ ; ତେଣୁ ଜିନିଷପତ୍ର ବିକ୍ରୀ ନ ହୋଇ ବଜାରରେ ଠୁଳହୋଇ ରହେ । ଉଦାହରଣ ସ୍ୱରୂପ ଆମେରିକାର ଜଣେ ସାଧାରଣ ଲୋକ ସେଠାର ଉନ୍ନତ ଶିଳ୍ପକଳାକୁ ସଦ୍‌ବ୍ୟବହାର କରିବାକୁ ଅସମର୍ଥ ହୁଏ । ତେଣୁ ଏହା ଅର୍ଥନୀତିକ୍ଷେତ୍ରରେ ଅଚଳ ଅବସ୍ଥା ସୃଷ୍ଟି କରେ । ଏହି ଅବସ୍ଥାକୁ ସୁଧାରିବା ପାଇଁ ଅନ୍ୟ ଦେଶର ବଜାରକୁ ହାତ କରିବା ଅନିବାର୍ଯ୍ୟ ହୋଇପଡ଼େ । ଫଳରେ ଯୁଦ୍ଧ ଲାଗେ । ବହୁ

ଉତ୍ପାଦନ ଓ ଲୋକସାଧାରଣଙ୍କର ଅଭାବ ହାତ ଧରାଧରି ହୋଇ ଶିଳ୍ପୋନ୍ନତ ଦେଶମାନଙ୍କରେ ଗତିକରନ୍ତି । ତେଣୁ ସେଠାରେ କଳଜାତ ଦ୍ରବ୍ୟଗୁଡ଼ିକୁ ଅଳ୍ପ କେତେ ଜଣ ମାତ୍ର ବ୍ୟବହାର କରି-ପାରନ୍ତି ।

ଦେଶର ଲୋକସାଧାରଣଙ୍କ କ୍ରୟଶକ୍ତି ଯେତେ ବୃଦ୍ଧି ପାଇବ, ଶିଳ୍ପଜାତ ଦ୍ରବ୍ୟ ସେତେ ଅଧିକ ବିକ୍ରୀ ହୋଇପାରିବ; ଶିଳ୍ପପତିମାନେ ଏହା ମନେ ରଖିବା ଦରକାର । ତେଣୁ ଲୋକ-ସାଧାରଣଙ୍କ ଅର୍ଥନୈତିକ ଅବସ୍ଥାକୁ ସ୍ୱଚ୍ଛଳ କରିବା ଶିଳ୍ପପତି-ମାନଙ୍କର ପ୍ରଧାନ କର୍ତ୍ତବ୍ୟ । କିନ୍ତୁ ସେମାନଙ୍କଠାରେ ଏହି ମନୋଭାବ ଦେଖା ଦେଉ ନ ଥିବା ବଡ଼ ଦୁଃଖର କଥା ।

କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାର ଯେତେ ଉନ୍ନତି ହେବ, ଦେଶର ବେକାର-ସମସ୍ୟା ସେତେ ତୀବ୍ର ହୋଇ ଉଠିବ । ଗାନ୍ଧୀଜୀଙ୍କ କଥାରେ—ଶ୍ରମ-ସଞ୍ଚୟର ଉପାୟହିଁ ବେକାର-ସୃଷ୍ଟିର ଉପାୟ । ଶ୍ରମ-ସଞ୍ଚୟର ଉପାୟ ସ୍ୱରୂପ ସାଧାରଣତଃ କଳକାରଖାନାର ଆଶ୍ରୟ ନେବାକୁ ହୁଏ । କିନ୍ତୁ ଭାରତର ସମସ୍ୟା ସ୍ୱତନ୍ତ୍ର । ଏଠାର ଭୋକିଲା ଓ ବେକାର ହୋଇ ରହିଥିବା ଅସଂଖ୍ୟ ଲୋକଙ୍କୁ କାମ ଯୋଗାଇବା ହିଁ ଭାରତ ପକ୍ଷରେ ଆଜି ପ୍ରଧାନ ସମସ୍ୟା । ଭାରତର ପୁଞ୍ଜିବଳ ନାହିଁ—ଅଛି ମାନବବଳ । ତେଣୁ ନିଜ ଦେଶର ଅବସ୍ଥା ବିଚାର ନ କରି କେବଳ ଆମେରିକା ଓ ରୁଷିଆ ପ୍ରଭୃତି ଦେଶଙ୍କୁ ଅନ୍ଧ ଅନୁକରଣ କରିବା ଆମ୍ଭମାନଙ୍କ ପକ୍ଷରେ ଆତ୍ମଘାତି ହେବ । ଆମେରିକାରେ ଲୋକଙ୍କୁ କିପରି ଜିନିଷ ଯୋଗାଇବାକୁ ହେବ, ସେ ପ୍ରଶ୍ନ ଆଜି ଉଠୁନାହିଁ । କଳକାରଖାନାର ବହୁ ଉତ୍ପାଦନକୁ କିପରି ଗ୍ରାହକ

ଯୋଗାଇବାକୁ ହେବ, ତାହା ଆଜି ସେଠାର ପ୍ରଧାନ ସମସ୍ୟା । କଳକାରଖାନା ମଧ୍ୟ ମନୁଷ୍ୟର ସୃଜନ ପ୍ରବୃତ୍ତି ଓ କର୍ମପ୍ରେରଣାକୁ ମାରିପକାଏ । ମୋଟ୍ ଉପରେ ଏହା ମନୁଷ୍ୟର ମାନବିକତାକୁ ନଷ୍ଟ କରିଦିଏ ।

ଗାନ୍ଧୀଜୀ କଳର ବିରୋଧୀ ନ ଥିଲେ । ସେ ଥିଲେ ଶୋଷଣର ପ୍ରବଳ ପରିପନ୍ଥୀ । ସେ ସ୍ପଷ୍ଟ କହିଛନ୍ତି—"ମୁଁ ଯନ୍ତ୍ରକୁ ଘୃଣା କରେନାହିଁ । ସବୁରି ମଙ୍ଗଳ ପାଇଁ ଉଦ୍ଦିଷ୍ଟ ଉଦ୍ଭାବନକୁ ମୁଁ ପସନ୍ଦ କରେ । କୋଟି କୋଟି କୁଟୀରବାସୀଙ୍କର ବୋଝ ଭାରକୁ ଲଘବ କରୁଥିବା ଯନ୍ତ୍ରକୁ ମୁଁ ସ୍ୱାଗତ କରିବି ।" କିନ୍ତୁ ଲୋକଙ୍କୁ ଅଳସୁଆ ରଖି ଜଡ଼ ଯନ୍ତ୍ରପାତିକୁ କାମ ଯୋଗାଇ ସଚଳ କରିବା ନୈତିକତାବିରୁଦ୍ଧ ବୋଲି ସେ ବିଚାରୁଥିଲେ । ମୋଟ ଉପରେ ଶୋଷଣହୀନ କଳକାରଖାନା (Non-exploiting machinery) ବିରୁଦ୍ଧରେ ସେ ସ୍ୱର ଉଠାଇ ନାହାନ୍ତି । ବର୍ତ୍ତମାନର କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥା ଅଳ୍ପ କେତେକ ଲୋକଙ୍କୁ କାମ ଯୋଗାଇ ସେମାନଙ୍କର କ୍ଷମତା ଓ ଧନର ବୃଦ୍ଧି ସାଧନ କରେ । କୋଟି କୋଟି ଲୋକଙ୍କ ଉପରେ ପ୍ରଭୁତ୍ୱ କରିବା ପାଇଁ ଏହା ମୁଷ୍ଟିମେୟ ଲୋକଙ୍କୁ ସୁବିଧା ଦିଏ । କିନ୍ତୁ ଗାନ୍ଧୀଜୀ ଚାହୁଁଥିଲେ—ସବୁ ଲୋକଙ୍କର ଏହି ଧନ, କ୍ଷମତା ଓ ସୁବିଧା ନେଇ ସମ ଅଧିକାର ରହୁ । ତାହା ସମ୍ଭବ ହେଉ ନ ଥିବାରୁ କଳକାରଖାନା ବିରୁଦ୍ଧରେ ଗାନ୍ଧିଜୀ ଅହିଂସ ସଂଗ୍ରାମ ଚଳାଇଥିଲେ ।

କିନ୍ତୁ କେନ୍ଦ୍ରୀକରଣ ବ୍ୟବସ୍ଥାର କେତେକ କାରଣ ରହିଛି । ଯେଉଁ ଦେଶରେ କଞ୍ଚାମାଲ ଲୋକସଂଖ୍ୟା ତୁଳନାରେ ଅଧିକ ପରିମାଣରେ ଉତ୍ପାଦିତ ହୁଏ, ସେଠାରେ କଳକାର-

ଖାନାର ଆଶ୍ରୟ ନେବା ନିତାନ୍ତ ଦରକାର ହୋଇପଡ଼େ । ଆମେରିକା ଓ ରୁଷିଆ ପ୍ରଭୃତି ଦେଶରେ ଲୋକସଂଖ୍ୟା ଅନୁପାତରେ ପ୍ରାକୃତିକ ସମ୍ବଳ (Natural resources) ଖୁବ୍ ବେଶି । ତେଣୁ ସେଠାରେ କଳର ସାହାଯ୍ୟ ନେବା ଅପରିହାର୍ଯ୍ୟ । ଲୋକଶକ୍ତିର ଅଭାବ ମଧ୍ୟ ଯନ୍ତ୍ରଶିଳ୍ପ ପ୍ରତିଷ୍ଠାନର ଅନ୍ୟ ଏକ କାରଣ । କିନ୍ତୁ ଭାରତର ଅବସ୍ଥା ଠିକ୍ ବିପରୀତ । ଭାରତରେ ପ୍ରାକୃତିକ ସମ୍ବଳ ନାହିଁ କି ପୁଞ୍ଜି ମଧ୍ୟ ନାହିଁ । ଲୋକଶକ୍ତି ଏଠାରେ ଭରପୂର । ତେଣୁ ଲୁହା, ରେଲୱେ, ମଟରକାର ପ୍ରଭୃତି ଯେଉଁ ବୃହଦାକାର ଶିଳ୍ପର ଉତ୍ପାଦନ ବ୍ୟବସ୍ଥା କୁଟୀରଶିଳ୍ପ ଦ୍ୱାରା ସମ୍ଭବ ନୁହେଁ, କେବଳ ସେହିଭଳି ଶିଳ୍ପର କେନ୍ଦ୍ରୀକରଣ ଏଠାରେ କରାଯାଇ ପାରେ ।

## ଆନ୍ତର୍ଜାତିକ ଅଶାନ୍ତି

ଶିଳ୍ପର କେନ୍ଦ୍ରୀକରଣ ଫଳରେ ଶିଳ୍ପପତି ସମୟ ଓ ସ୍ଥାନକୁ ଜୟ କରି ବହୁ ଉତ୍ପାଦନର ବ୍ୟବସ୍ଥା କରେ । ଯେତେ ଅଳ୍ପ ସମୟ ମଧ୍ୟରେ ଯେତେ ଅଧିକ ଉତ୍ପାଦନ ହେବ, ମିଲ୍‌ମାଲିକ ପକ୍ଷରେ ସେତେ ଲାଭ । ଶିଳ୍ପକ୍ଷେତ୍ରରେ ବହୁ ଉତ୍ପାଦନ ପାଇଁ ପ୍ରତିଦ୍ୱନ୍ଦିତାହିଁ ପୃଥିବୀରେ ସାମ୍ରାଜ୍ୟବାଦ ପ୍ରସାରରେ ସାହାଯ୍ୟ କରୁଛି । ଅନ୍ୟାନ୍ୟ ଦୁର୍ବଳ ରାଜ୍ୟକୁ ଅଧିକାର କରି କଞ୍ଚାମାଲ ସୁବିଧାରେ ହାଇପରିବା ପାଇଁ ଶିଳ୍ପୋନ୍ନତ ଦେଶମାନେ ନାନା ଫନ୍ଦି ଫିକର ବାହାର କରିବା ଅତି ସ୍ୱାଭାବିକ । ଏ ସମ୍ପର୍କରେ ଇଂଲଣ୍ଡରେ ଥିବା ଲାଙ୍କାସାୟାର ଲୁଗା କାରଖାନାର ଦୃଷ୍ଟାନ୍ତ ଦିଆଯାଇପାରେ ।

ଆଜି ମଧ୍ୟ ବିଦେଶୀ ରାଜ୍ୟକୁ ଦବେଇ ଚପେଇ ସବୁଦିନ ପାଇଁ କରଗତ କରି ରଖିବାକୁ ହେଲେ ସୈନ୍ୟବାହିନୀ ଲୋଡ଼ା । ବହିର୍ବାଣିଜ୍ୟର ସୁବିଧା ପାଇଁ ଜଳପଥଗୁଡ଼ିକୁ ନିରାପଦ ରଖିବା ଦରକାର । ତେଣୁ ଯୁଦ୍ଧଜାହାଜ ଗୁଡ଼ିଏ ରଖିବାକୁ ହେବ । ସେହିପରି ପ୍ରେମବୁ ରାଜ୍ୟର ଖବର ଅନ୍ତର ଜାଣିବା ଓ ତୁରନ୍ତ ପ୍ରତିକାର ବ୍ୟବସ୍ଥା କରିବା ପାଇଁ ଉଡ଼ାଜାହାଜବାହିନୀ ରଖିବା ବି ଆବଶ୍ୟକ ହୋଇଉଠେ । ଏହି ଉଦ୍ଦେଶ୍ୟରେ ଦେଶ ତମାମ ଅସ୍ତ୍ରଶସ୍ତ୍ର କାରଖାନା ଖୋଲିବାକୁ ପଡ଼େ । ଏସବୁ ପ୍ରତିକାର ବ୍ୟବସ୍ଥା ଆନ୍ତର୍ଜାତିକ ଅଶାନ୍ତିର ବୀଜ ବୁଣେ ।

ପୃଥିବୀରେ ଚାହିଦା ଦୃଷ୍ଟିରୁ ଉତ୍ପାଦନ ହେଉଥିବା ପର୍ଯ୍ୟନ୍ତ ହିଂସା ଓ ଶାନ୍ତିଭଙ୍ଗର କୌଣସି ଆଶଙ୍କା ନ ଥାଏ ; କିନ୍ତୁ ଏଥିରେ ବ୍ୟତିକ୍ରମ ଘଟିଲେ ଯୁଦ୍ଧ ଅନିବାର୍ଯ୍ୟ ହୋଇ ଉଠେ ।

ପୂର୍ବେ ଚାହିଦା ଦୃଷ୍ଟିରୁ ଉତ୍ପାଦନ ବୃଦ୍ଧି ପାଇଁ ସବୁପ୍ରକାର ଚେଷ୍ଟା କରାଯାଉଥିଲା ; କିନ୍ତୁ ବର୍ତ୍ତମାନ ଯନ୍ତ୍ରଶିଳ୍ପ ଯୋଗେ ଲୋକଙ୍କ ମଧ୍ୟରେ ଜିନିଷପତ୍ର ପାଇଁ ଚାହିଦା ସୃଷ୍ଟି କରାଯାଉଛି । କାରଣ କୃତ୍ରିମ ଅଭାବ ବୃଦ୍ଧି ଆନ୍ତର୍ଜାତିକ ଅଶାନ୍ତି ଅସନ୍ତୋଷର ମୂଳ କାରଣ । ଏହାଦ୍ୱାରା ପୃଥିବୀର ସଭ୍ୟତା, ସଂସ୍କୃତି ଲୋପ ପାଇ ଯିବାକୁ ବସିଛି କହିଲେ ଅତିରଞ୍ଜିତ ହେବ ନାହିଁ ।

## ଶିଳ୍ପର ବିକେନ୍ଦ୍ରୀକରଣ ବା କୁଟୀରଶିଳ୍ପ

ଅଳ୍ପ କେତେକ ବଡ଼ ବଡ଼ ଶିଳ୍ପାନୁଷ୍ଠାନ ବଦଳରେ ବିଭିନ୍ନ ସ୍ଥାନରେ ଛୋଟ ଛୋଟ ଶିଳ୍ପାନୁଷ୍ଠାନମାନ ଗଢ଼ି ଉତ୍ପାଦନ କରିବାକୁ ଶିଳ୍ପର ବିକେନ୍ଦ୍ରୀକରଣ କୁହାଯାଏ ।

ଭାରତ ଗୋଟିଏ ଗ୍ରାମବହୁଳ ଦେଶ ; ତେଣୁ ଭାରତର ଅର୍ଥନୈତିକ ବିକାଶ ଗାଁଗହଳର ଉନ୍ନତି ଉପରେ ନିର୍ଭର କରେ । କୁଟୀରଶିଳ୍ପ ଗ୍ରାମ-ଅର୍ଥନୀତିର ମୂଳପିଣ୍ଡ । ଏହାକୁ ବାଦ ଦେଲେ ଭାରତ ଭଳି ଦେଶର ଯଥାର୍ଥ ଅର୍ଥନୈତିକ ବିକାଶ ସୁଦୂରପରାହତ ହୋଇରହିବ ।

ଯନ୍ତ୍ରଶିଳ୍ପ କୃଷିର ବିକାଶରେ ଅନ୍ତରାୟ ହୋଇ ଉଠେ । ଲୋକମାନେ ଅଧିକ ରୋଜଗାର କରିବା ଆଶାରେ ଗୃହବାସ ଛାଡ଼ି କଳକାରଖାନାରେ ଯାଇ କାମ କରନ୍ତି । କିନ୍ତୁ କୁଟୀର-ଶିଳ୍ପର ବିକାଶରେ କୃଷିର କୌଣସି କ୍ଷତି ହୁଏ ନାହିଁ । କାରଣ ଗାଁଗହଳର କୃଷକ କୁଟୀରଶିଳ୍ପକୁ ଉପବ୍ୟବସାୟ ରୂପେ ସାଧାରଣତଃ ଗ୍ରହଣ କରିଥାଏ । ସେ ତାହାର ପ୍ରଧାନ ଧନ୍ଦା କୃଷିକାର୍ଯ୍ୟ କରି ସାରି କେବଳ ଅବସର ସମୟରେ କୁଟୀର-ଶିଳ୍ପରେ ହାତ ଦିଏ । ତେଣୁ କୁଟୀରଶିଳ୍ପ ହିଁ ଭାରତ ପରି କୃଷିପ୍ରଧାନ ଦେଶ ପକ୍ଷରେ ଏକମାତ୍ର ଅର୍ଥନୈତିକ ପନ୍ଥା ।

କୁଟୀରଶିଳ୍ପଦ୍ୱାରା ଦେଶବାସୀଙ୍କ କଳାରୁଚିର ବିକାଶ ହୁଏ । ଯନ୍ତ୍ରଶିଳ୍ପଦ୍ୱାରା ଲୋକଙ୍କର କଳା ଓ ସୌନ୍ଦର୍ଯ୍ୟଜ୍ଞାନ ଲୋପପାଏ । ଦେଶର ପାରମ୍ପରିକ କଳାନୈପୁଣ୍ୟ ଲୋପ ପାଇବାଦ୍ୱାରା ଲୋକଙ୍କର ସୃଜନୀଶକ୍ତି ମରିଯାଏ । ବ୍ରିଟିଶ ସରକାରଙ୍କ ରାଜତ୍ୱ ଫଳରେ ବିଖ୍ୟାତ କଳାନିପୁଣ ଦେଶ ଭାରତ ଆଜ କଳାହୀନ । ବାସ୍ତବିକ ଯନ୍ତ୍ରଶିଳ୍ପର ବିକାଶରେ ମାନବିକତାର ମୃତ୍ୟୁ ଘଟେ । କୁଟୀରଶିଳ୍ପୀ ପ୍ରଚଳିତ ରୁଚି ଓ ପରିସ୍ଥିତିକୁ ବିଚାର କରି ଉତ୍ପାଦନରେ ମନ ବଳାଏ । ଏପରି କି ବ୍ୟକ୍ତି ବିଶେଷର ରୁଚିକୁ ବିଚାର କରି ସେ ତାର ସୃଜନ-

ଶକ୍ତିର ପରିଚୟ ହଏ । ଏହାର ମନସ୍ତାତ୍ତ୍ୱିକ ମୂଲ୍ୟ କିଛି କମ୍ ନୁହେଁ । କିନ୍ତୁ ଯନ୍ତ୍ରଶିଳ୍ପର ମାଲିକ ବ୍ୟକ୍ତିଗତ ରୁଚି ଅରୁଚି ବିଚାର ନ କରି ବହୁ ଉତ୍ପାଦନ ପାଇଁ ବ୍ୟଗ୍ର ହୋଇଉଠେ । ଉତ୍ପାଦନରେ ଶିଳ୍ପପତିର ଥାଏ ଲାଭର ବିଚାର—କିନ୍ତୁ କୁଟୀରଶିଳ୍ପୀର ଥାଏ ବଞ୍ଚି ରହିବାର ବିଚାର ।

ଶିଳ୍ପର ଯେତେ କେନ୍ଦ୍ରୀକରଣ ହେଲେ ମଧ୍ୟ ପୃଥିବୀରେ କୁଟୀରଶିଳ୍ପ ତିଷ୍ଠି ରହିବ । କାରଣ ଯନ୍ତ୍ରଶିଳ୍ପର ବହୁ ଉତ୍ପାଦନ ମଧ୍ୟରେ ବ୍ୟକ୍ତିଗତ ରୁଚି ଅରୁଚିର ବିଚାର ନାହିଁ । କିନ୍ତୁ ସବୁ ଲୋକେ କଳତିଆରି ଶସ୍ତା ଜିନିଷ ପାଇଁ ନିଜ ନିଜର ବ୍ୟକ୍ତିଗତ ରୁଚିକୁ ବଳି ଦେଇପାରିବେ ନାହିଁ । ତେଣୁ ଯୁଗେ ଯୁଗେ ଓ ଦେଶେ ଦେଶେ ଏହା ତିଷ୍ଠି ରହିବ ହିଁ ରହିବ ।

ଦେଶରେ କେବଳ ଉତ୍ପାଦନ ବଢ଼ିଲେ ଯେ ଲୋକମାନେ ସୁଖଶାନ୍ତିରେ ରହିବେ—ଏହା ବିଚାର କରିବା ଭୁଲ । ଦେଶର ଉତ୍ପାଦନ ତୁଳନାରେ ଲୋକଙ୍କର କ୍ରୟଶକ୍ତି (Purchasing Power) ଯଦି ବୃଦ୍ଧି ନ ପାଏ, ତା'ହେଲେ ଉତ୍ପାଦନ ବୃଦ୍ଧିରେ ସେମାନଙ୍କର କିଛି ଲାଭ ହୁଏ ନାହିଁ । ବର୍ତ୍ତମାନ ସମଗ୍ରପୃଥିବୀରେ ଉତ୍ପାଦନ ସମସ୍ୟା ଅପେକ୍ଷା ଉତ୍ପାଦନର ବଣ୍ଟନ-ସମସ୍ୟା ଅଧିକ ଗୁରୁତର । ଆଜିକାଲି ବୃହଦାକାର ଶିଳ୍ପବ୍ୟବସ୍ଥା ଫଳରେ ବହୁ ଉତ୍ପାଦନ ଓ ଅଭାବ ମିଳିମିଶି ରହିଛି । ଲୋକସାଧାରଣଙ୍କ ମଧ୍ୟରେ ବଣ୍ଟନର ସୁବ୍ୟବସ୍ଥା ହୋଇ ନ ପାରିଲେ କେବଳ ଉତ୍ପାଦନ ବଢ଼ାଇ କିଛି ଲାଭ ନାହିଁ । କିନ୍ତୁ କୁଟୀରଶିଳ୍ପରେ ଉତ୍ପାଦନର ବଣ୍ଟନ-ସମସ୍ୟା ଆଦୌ ଉଠେନାହିଁ । ବିକେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାରେ ଉତ୍ପାଦନ ଓ ବଣ୍ଟନ ସ୍ୱାଭାବିକ

ଘରେ ହୋଇଯାଏ । ତନ୍ତୀ ତାର ତନ୍ତରେ ଯେଉଁ ଲୁଗା ବୁଣେ, ତାକୁ ବିକ୍ରୀ କରିବା ପାଇଁ ଦୂର ଦେଶକୁ ପଠାଇବା ଦରକାର ପଡ଼େନାହିଁ । କିନ୍ତୁ ଲୁଗାକଲର ମାଲିକ ଜିନିଷର ବହୁ ଉତ୍ପାଦନ ପରେ ବହୁଦୂର ଅଞ୍ଚଳରେ ତାକୁ ବିକ୍ରୀ କରିବାର ବ୍ୟବସ୍ଥା କରେ । ଏହା ଫଳରେ ଧନ ଓ କ୍ଷମତା ମୁଷ୍ଟିମେୟ ପୁଞ୍ଜିପତି ମିଲମାଲିକଙ୍କଠାରେ କେନ୍ଦ୍ରୀଭୂତ ହୋଇଯାଏ । କାରଣ ବହୁ ଉତ୍ପାଦନ ଉପରେ ଯାହାର ହାତ ରହିଲା, ତାହାର ହାତ-ମୁଠା ଭିତରେ ଅନେକ କ୍ଷମତା ଠୁଳ ହୋଇ ରହିବା ଅତି ସ୍ୱାଭାବିକ । ଏହାରି ଫଳରେ ଦେଶରେ ଆଜି ନାନାପ୍ରକାର ଶୋଷଣ ସମ୍ଭବ ହୋଇଛି ଓ ଗାନ୍ଧିଜୀଙ୍କ ଶ୍ରେଣୀ ଓ ଶୋଷଣହୀନ ସମାଜଗଠନ କେବଳ ସ୍ୱପ୍ନ ହୋଇଉଠିଛି ।

କାରିଗର ତା'ର ନିଜ ଘରେ ଯେଉଁ ଛୋଟ ଛୋଟ ଯନ୍ତ୍ରପାତି ନେଇ କାମ କରେ, ତଦ୍ଦ୍ୱାରା ସମାଜରେ ଅର୍ଥନୈତିକ ସାମାଜିକ ଓ ରାଜନୈତିକ ବୈଷମ୍ୟ ସୃଷ୍ଟି ହେବାର ଆଶଙ୍କା ନ ଥାଏ । କିନ୍ତୁ ଯନ୍ତ୍ରଶିଳ୍ପ ନାନାବିଧ ସାମାଜିକ ବିଭ୍ରାଟର କାରଣ ହୁଏ । ଉତ୍ପାଦନର କେନ୍ଦ୍ରୀକରଣ ଫଳରେ ତାର କୃତ୍ରିମ ବଣ୍ଟନ ଆବଶ୍ୟକ ହୋଇଉଠେ । ଏହାଦ୍ୱାରା ଅନେକ ଲାଭଖୋର ବ୍ୟବସାୟୀ କଳକାରଖାନାରୁ ଜିନିଷ କିଣି ନେଇ ଦୂର ମଫସଲ ଅଞ୍ଚଳରେ ବହୁ ଲାଭରେ ସେସବୁ ବିକ୍ରୀ କରନ୍ତି । ଏହା ଫଳରେ ଯେଉଁ ବ୍ୟବସାୟୀର ଉତ୍ପାଦନରେ କୌଣସି ହାତ ନାହିଁ, ସେ ବହୁତ ସମ୍ପତ୍ତିର ମାଲିକ ହୋଇ ବସେ; ଅଥଚ ପ୍ରକୃତ ଉତ୍ପାଦନକାରୀ କୃଷୀ ମୂଲିଆ ଶ୍ରେଣୀ ଯେଉଁ ଅଭାବକୁ ସେହି ଅଭାବରେ ବୁଡ଼ିରହନ୍ତି । ଆଜି ମଧ୍ୟ ଏହାଦ୍ୱାରା ଅଯଥା ଅନେକ

ମାନବକଶକ୍ତି ପ୍ରକୃତ ଜାତୀୟ ସମ୍ପତ୍ତିର ଉତ୍ପାଦନରେ ଲଗିପାରେ ନାହିଁ । କାରଣ ଲାଭଖୋର ବଣିକ ବ୍ୟବସାୟୀ-ମାନେ ଦେଶର ଉତ୍ପାଦନ ବୃଦ୍ଧିରେ ଟିକିଏ ହେଲେ ସାହାଯ୍ୟ କରନ୍ତି ନାହିଁ । କେବଳ ଏଠାର ଜିନିଷ ସେଠାକୁ ନେଇ ସେମାନେ ଲାଭ ଉଠାନ୍ତି । କିନ୍ତୁ କୁଟୀରଶିଳ୍ପଜାତ ଜିନିଷରେ ବ୍ୟବସାୟ କରି ଏପରି ଉପୁରିଲାଭ ଉଠାଇବାର ଆଶଙ୍କା ଖୁବ୍ କମ । ତେଣୁ କୁଟୀରଶିଳ୍ପର ବିକାଶସାଧନଦ୍ୱାରା ଦେଶର ଯଥାର୍ଥ ଉତ୍ପାଦନ ବୃଦ୍ଧିପାଏ । କାରଣ ଏହି ବ୍ୟବସ୍ଥା ଫଳରେ କୌଣସି ଲୋକ ଦେଶର ଉତ୍ପାଦନ ବୃଦ୍ଧିରେ ସାହାଯ୍ୟ ନ କରି ରହିପାରନ୍ତି ନାହିଁ ।

କୁଟୀରଶିଳ୍ପଜାତ ଜିନିଷ କଳଜାତ ଜିନିଷ ଅପେକ୍ଷା ଅଧିକ ଦାମିକା ହୋଇଥାଏ । ମିଲମାଲିକ ବହୁତ ଜିନିଷ କଟାଇବା ପାଇଁ ପ୍ରତି ଜିନିଷ ପିଛା କମ ଲାଭ ରଖେ । କାରଣ କମ୍ ଦାମ ହେଲେ ମଧ୍ୟ ଜିନିଷ ଯେତେ ଅଧିକ ପରିମାଣରେ ବିକ୍ରୀ ହେବ, ତାର ସେତେ ଲାଭ । କିନ୍ତୁ କୁଟୀରଶିଳ୍ପଦ୍ୱାରା ବହୁ ଉତ୍ପାଦନ ସମ୍ଭବ ନୁହେଁ । ତେଣୁ କୁଟୀରଶିଳ୍ପୀର ପାରିଶ୍ରମିକ ଦୃଷ୍ଟିରୁ ଜିନିଷର ଦାମ ଅପେକ୍ଷାକୃତ ଅଧିକ ହୋଇଯାଏ । ଏହା ବ୍ୟତୀତ ମିଲ ଜିନିଷର ଦାମ କମ ହେବାର ଅନ୍ୟାନ୍ୟ ଅନେକ କାରଣ ବି ରହିଛି । ଜିନିଷ ଯେତେ ଶସ୍ତା ହୁଏ, ତାହାର ବିକ୍ରୀ ସେତେ ଅଧିକ ହୁଏ । ତେଣୁ ଜିନିଷପତ୍ରର ମୂଲ୍ୟ କମ ହେଲେହେଁ ସେସବୁ ଅଧିକ କଟିବା ଦ୍ୱାରା ସେଥିରୁ ଅଧିକ ଲାଭ ହୋଇଥାଏ । ଏହି ଉଦ୍ଦେଶ୍ୟରେ କଳମାଲିକ ଶ୍ରମିକମାନଙ୍କୁ ପାରିଶ୍ରମିକ କମ ଦିଏ ଓ ସେମାନଙ୍କଠାରୁ ଅଧିକ କାମ ଆଦାୟ କରେ । ଆଜି

ମଧ୍ୟ ଯଥାର୍ଥ ମୂଲ୍ୟ ନ ଦେଇ ସେ ଚାଷୀଠାରୁ କଞ୍ଚାମାଲ ଶସ୍ତାରେ ନେଇ ଆସେ; କାରଣ ଚାଷୀଙ୍କୁ ଅଭାବ ବେଳେ ଟଙ୍କା ଦେଇ ସେ ତାର ଶୋଷଣ-ଫାସରେ ବାନ୍ଧି ରଖେ ।

ବହୁ ଉତ୍ପାଦନ ବ୍ୟବସ୍ଥାରେ ଲାଭ ଜଣକଠାରେ କେନ୍ଦ୍ରୀଭୂତ ହେଉଛି । କିନ୍ତୁ କୁଟୀରଶିଳ୍ପଜାତ ଜିନିଷର ଲାଭଟା ବାଣ୍ଟିକୁଣ୍ଟି ହୋଇ ଅନେକ ଲୋକଙ୍କ ନିକଟକୁ ଯାଉଅଛି । କୁଟୀର-ଶିଳ୍ପୀ ଅର୍ଥାଭାବ ହେତୁ କଞ୍ଚାମାଲସବୁ ଶସ୍ତା ସମୟରେ କିଣି ରଖିପାରେ ନାହିଁ । ଏହିସବୁ କାରଣରୁ ମିଲଜିନିଷ ହାତ-ତିଆରି ଜିନିଷ ଅପେକ୍ଷା ମହଙ୍ଗା ହୁଏ ।

କଳଜିନିଷ ଶସ୍ତା ହେଲେ ମଧ୍ୟ କର୍ତ୍ତବ୍ୟ ଦୃଷ୍ଟିରୁ ଆମେ ତାହା କିଣିବା ଅନୁଚିତ । କାରଣ ତାହା ନିରୀହ ଚାଷୀ ମୂଲିଆଙ୍କ ରକ୍ତ ଦ୍ୱାରା ରଞ୍ଜିତ ହୋଇଥାଏ । ଆମେ ତାହା କିଣିବା ଦ୍ୱାରା ଶ୍ରେଣୀଭେଦ, ଶୋଷଣ ଓ ପୁଞ୍ଜିବାଦକୁ ଆଶୀର୍ବାଦ ଜଣାଉ । କିନ୍ତୁ ଅଧିକ ଦାମ୍ ଦେଇ ହାତତିଆରି ଜିନିଷ କିଣିବା ଦ୍ୱାରା ଧନର ସୁସମ ବଣ୍ଟନ ଓ ଗରିବ ଚାଷୀମୂଲିଆଙ୍କ କ୍ରୟଶକ୍ତିବୃଦ୍ଧିରେ ଯେ ଆମେ ସାହାଯ୍ୟ କରୁ, ଏହା ଆମକୁ ମନେ ରଖିବାକୁ ହେବ ।

ପ୍ରଥମେ ଇଂଲଣ୍ଡରେ ବୃହତ୍ ଶିଳ୍ପ ଜନ୍ମଲାଭ କରିଥିଲା; କିନ୍ତୁ ସେଠାରେ ବର୍ତ୍ତମାନ କୁଟୀରଶିଳ୍ପର ବିକାଶ ନିମନ୍ତେ ଚେଷ୍ଟା ହେଲଣି । କାରଣ ପ୍ରଥମ ମହାଯୁଦ୍ଧ ପରେ ପ୍ରତ୍ୟେକ ସଭ୍ୟ ଦେଶରେ ଶିଳ୍ପର କେନ୍ଦ୍ରୀକରଣ ଫଳରେ ବେକାରସମସ୍ୟା ଦେଖାଦେଲା । ତେଣୁ ଜାପାନ ବଡ଼ ଚାଲାକି କଲା । କେତେକ ବଡ଼ ବଡ଼ ଶିଳ୍ପକୁ ବାଦ ଦେଇ ସେଠାରେ ଅନ୍ୟାନ୍ୟ ଶିଳ୍ପଗୁଡ଼ିକୁ

ଧାଙ୍ଗି ଗ୍ଲେଟ ଗ୍ଲେଟ କରି ଦିଆଗଲା । ଏହିପରି ଶିଳ୍ପର ବିକେନ୍ଦ୍ରୀକରଣ ଫଳରେ ଜିନିଷର ଉତ୍ପାଦନ ଖର୍ଚ୍ଚ କମ ପଡ଼ିଲା । ତେଣୁ ପୃଥିବୀର କୌଣସି ଦେଶ ପୃଥିବୀ-ବଜାରରେ ଜାପାନ ସହିତ ପ୍ରତିଯୋଗିତା କରିପାରିଲେ ନାହିଁ । ଫଳରେ ସମସ୍ତଙ୍କ ନିଦ ଭାଙ୍ଗିଲା । ଆମେରିକାରେ ମଧ୍ୟ ଫୋର୍ଡ଼ କାରଖାନାକୁ ଭାଙ୍ଗି କେତେ ପରିମାଣରେ ଗ୍ଲେଟ ଗ୍ଲେଟ କରି ଦିଆଗଲା । ଜାପାନର ତୀବ୍ର ପ୍ରତିଯୋଗିତା ଫଳରେ ପାଶ୍ଚାତ୍ୟ ଦେଶମାନେ ନିଜ ଶିଳ୍ପମାନଙ୍କର ତ୍ରୁଟି ବୁଝିପାରିଲେ । ଇଂଲଣ୍ଡରେ କୁଟୀରଶିଳ୍ପ ପ୍ରତି ଯତ୍ନ ନିଆଯିବାରୁ ସେଠାରେ ବର୍ତ୍ତମାନ ବେକାର-ସମସ୍ୟା ଆୟତ୍ତାଧୀନ ହୋଇପାରିଛି ଓ ଫଳରେ ଉତ୍ପାଦନ ବୃଦ୍ଧି ପାଇଛି ।

ଆମ ଭାରତବର୍ଷ ପାଇଁ ଏପରି ଅର୍ଥନୈତିକ ପନ୍ଥା ଗ୍ରହଣ କରିବାକୁ ହେବ, ଯାହା ଫଳରେ ଦେଶର ଉତ୍ପାଦନ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ତାହାର ସୁଷ୍ଠୁ ବଣ୍ଟନ ହେଉଥିବ । ଏହି ବ୍ୟବସ୍ଥା ଦିନକୁ ଦିନ ଧନୀ ଲୋକଙ୍କର ଅଭାବ ବୃଦ୍ଧି ନ କରି ଲୋକ ସାଧାରଣଙ୍କର ଅଭାବମୋଚନରେ ସାହାଯ୍ୟ କରିପାରିବ । ଏହା ସମାଜରେ ଅର୍ଥନୈତିକ ସମତା ଓ ସୁଖଶାନ୍ତି ପ୍ରତିଷ୍ଠା କରି ପାରୁଥିବ । କୃଷକ ଓ ଶ୍ରମିକମାନଙ୍କର ଅନ୍ତର୍ନିହିତ ସମସ୍ତ ଶକ୍ତିର ବିକାଶସାଧନ ପାଇଁ ଏଥିରେ ମଧ୍ୟ ସୁବ୍ୟବସ୍ଥା ଥିବା ଆବଶ୍ୟକ । ଏସବୁ ଦୃଷ୍ଟିରୁ ବିଚାର କଲେ ବିକେନ୍ଦ୍ରୀକରଣହିଁ ଶିଳ୍ପକ୍ଷେତ୍ରରେ ଆମ୍ଭମାନଙ୍କ ପାଇଁ ଏକମାତ୍ର ପନ୍ଥା ।

କୁଟୀରଶିଳ୍ପର ବିକାଶ ପାଇଁ ବିଶେଷ ପୁଞ୍ଜିର ଆବଶ୍ୟକତା ନାହିଁ । ଯେ କୌଣସି ବୃଷୀମୂଲିଆ ମଧ୍ୟ ସାମାନ୍ୟ ଖର୍ଚ୍ଚରେ ଏହି ଶିଳ୍ପବ୍ୟବସାୟ କରିପାରେ । କୁଟୀରଶିଳ୍ପ ପାଇଁ

ବିଶେଷ କୌଣସି ଯନ୍ତ୍ରପାତିର ମଧ୍ୟ ଆବଶ୍ୟକତା ନାହିଁ । ଫଳରେ ଯନ୍ତ୍ରଶିଳ୍ପ ପାଇଁ ବିଦେଶୀ କଳକବ୍ଜା କିଣିବାରେ ଦେଶର ଧନ ବିଦେଶକୁ ବୋହିହୋଇ ଚାଲିଯିବାର ଯେପରି ଆଶଙ୍କା ଥାଏ, ଏଥିରେ ସେପରି କୌଣସି ଆଶଙ୍କା ନ ଥାଏ ।

କୁଟୀରଶିଳ୍ପର ବିକାଶରେ ଦେଶର ବେକାର ଓ ଅର୍ଦ୍ଧ-ବେକାରସମସ୍ୟାର ସମାଧାନ ଖୁବ୍ ସମ୍ଭବ । ଭାରତର ଅଧିକାଂଶ ଚାଷୀ ବର୍ଷର ଛ'ମାସ ଚାଷକାମ ନ ଥିବାରୁ ବେକାର ହୋଇ ବସନ୍ତି । ତେଣୁ ଏହି ଅର୍ଦ୍ଧ ବେକାରସମସ୍ୟା ଭାରତର ଏକ ପ୍ରଧାନ ଅର୍ଥନୈତିକ ସମସ୍ୟା । ସେମାନଙ୍କୁ ଯଥାଯଥ ଭାବରେ ବର୍ଷସାରା କର୍ମନିଯୁକ୍ତ କରିବାକୁ ହେଲେ ଆମ ଦେଶ ପାଇଁ ଶିଳ୍ପର ବିକେନ୍ଦ୍ରୀକରଣ ନିତାନ୍ତ ଆବଶ୍ୟକ । କୃଷି ସହିତ ପ୍ରତ୍ୟେକ କୃଷିଜୀବୀଙ୍କୁ ଗୋଟିଏ ପରିପୂରକ ଧନ୍ଦା ଯୋଗାଇ ଦିଆଗଲେ ଦେଶର ଅର୍ଥନୈତିକ ସ୍ୱଚ୍ଛଳତା ସମ୍ଭବ ହୁଅନ୍ତା ।

ଶିଳ୍ପର କେନ୍ଦ୍ରୀକରଣ ଦ୍ୱାରା ଦେଶରେ ଗଣତନ୍ତ୍ରର ମୃତ୍ୟୁ ଘଟେ । କିନ୍ତୁ ଭାରତର ଗଣତନ୍ତ୍ର ଉପରେ ବିଶ୍ୱାସ ଥିବାରୁ ଶିଳ୍ପର ବିକେନ୍ଦ୍ରୀକରଣ ବ୍ୟବସ୍ଥାହିଁ ଆମ୍ଭମାନଙ୍କୁ ଗ୍ରହଣ କରିବାକୁ ହେବ ।

ହାତକାମରେ ବ୍ୟକ୍ତିତ୍ୱ ବିକାଶର ଅବକାଶ ଥାଏ । କୁଟୀରଶିଳ୍ପୀ ତାର ମନମୁତାବକ ଶିଳ୍ପ ରଚନା କରେ । କିନ୍ତୁ ଯନ୍ତ୍ରଶିଳ୍ପରେ ଆତ୍ମାହୀନ ବସ୍ତୁ ଉତ୍ପାଦନହିଁ ଏକମାତ୍ର ଚିନ୍ତା ! ବାସ୍ତବିକ କୁଟୀରଶିଳ୍ପର ବିକାଶରେ ଜାତିର ହାତହାର ବୁଦ୍ଧି ଓ

ଚତୁରତାର ଅଭିବୃଦ୍ଧି ହୋଇଥାଏ । କାରଣ ଉତ୍ପାଦନର ବିକେନ୍ଦ୍ରୀକୃତ ପ୍ରଣାଳୀରେ ଶିକ୍ଷଣୀୟ ମୂଲ୍ୟ ଯଥେଷ୍ଟ ରହିଥାଏ ।

କୁଟୀରଶିଳ୍ପଜାତ ଜିନିଷ ଲୋକଙ୍କର ଅଭାବ ଓ ରୁଚି ଦୃଷ୍ଟିରୁ ଉତ୍ପାଦିତ ହୋଇଥିବାରୁ ସେଥିପାଇଁ ଲୋକଙ୍କ ମଧ୍ୟରେ କୃତ୍ରିମ ଅଭାବ ସୃଷ୍ଟିର ଚେଷ୍ଟା ନ ଥାଏ । ଫଳରେ କୁଟୀର-ଶିଳ୍ପର ବିକାଶରେ ହିଁ ଆନ୍ତର୍ଜାତିକ ଶାନ୍ତିସନ୍ତୋଷ ସମ୍ଭବ । ଏହା ମଧ୍ୟ ସାଧାରଣ କୃଷି ମୂଳଆର ନିପୁଣକ୍ତିର, ବୃଦ୍ଧି ସାଧନରେ ବିଶେଷ ସାହାଯ୍ୟ କରେ ।

କୁଟୀରଶିଳ୍ପରେ ଲାଭର ପ୍ରଶ୍ନ ନ ଥାଏ । ଜିନିଷର ଦାମ୍ ଅଧିକ ହେଲେ ମଧ୍ୟ ଏହାର ମୂଲ୍ୟ ସାମାଜିକ ଶୋଷଣରେ ସହାୟକ ହୁଏ ନାହିଁ । ଏଥିରେ ପ୍ରତ୍ୟେକ ଜିନିଷର ଉଚିତ ମୂଲ୍ୟ ଦିଆଯାଏ । କୁଟୀରଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ଓ ବଣ୍ଟନ ସଙ୍ଗେ ସଙ୍ଗେ ସ୍ୱାଭାବିକ ଭାବରେ ହୋଇ ଯାଉଥିବାରୁ ମୂଲ୍ୟାଧିକ୍ୟରେ ଆମ୍ଭେମାନେ ବିବ୍ରତ ହେବା ଅନୁଚିତ । କୁଟୀରଶିଳ୍ପର ଯେତେ ଅଧିକ ବିକାଶ ହେବ, ଦେଶରେ ଥିବା ଧନସମ୍ପତ୍ତି ସେତେ ସୁନ୍ଦରଭାବରେ ଲୋକଙ୍କ ମଧ୍ୟରେ ବାଣ୍ଟି-ହୋଇ ରହିବ । ଫଳରେ ଏହା ଅଳ୍ପ କେତେକ ପୁଞ୍ଜିପତିଙ୍କ-ପାଖରେ କେନ୍ଦ୍ରୀଭୂତ ହୋଇ ଦେଶରେ ବିଭ୍ରାଟ ସୃଷ୍ଟି କରିବାର ଆଶଙ୍କା ନ ଥିବ ।

ଆଗରୁ କୁହାଯାଇଅଛି ଯେ ଗାନ୍ଧିଜୀ ଶୋଷଣହୀନ କଳକୁ ସ୍ୱାଗତ ଜଣାଇଛନ୍ତି । ଗାଁଗହଳର ଘରେ ଘରେ ଯନ୍ତ୍ର ବିଜୁଳିଶକ୍ତି ବା ଉନ୍ନତ ଧରଣର ଛୋଟ ଛୋଟ ଯନ୍ତ୍ରପାତିଦ୍ୱାରା ଅଧିକ ଉତ୍ପାଦନ

ସମ୍ଭବ ହୁଅନ୍ତା ଓ ଲୋକଙ୍କର ହାଡଭଙ୍ଗା ପରିଶ୍ରମ ଟିକିଏ ଲାଘବ ହୁଅନ୍ତା, ତା'ହେଲେ ଗାନ୍ଧିଜୀ ଖୁସି ହୁଅନ୍ତେ ବୋଲି କହିଛନ୍ତି । ଜୀବନଧାରଣ ପାଇଁ ଲୋକେ ଖଟି ଖଟି ମରନ୍ତୁ ବୋଲି ସେ କେବେ ଇଚ୍ଛୁ ନ ଥିଲେ ।

ଏବେ ଓ୍ୱାର୍ଦ୍ଧାର ପ୍ରଫେସର ଏମ୍, ଏନ୍, ଓଗରଓ୍ୱାଲ୍ ଆମେରିକାରୁ ଫେରି କହିଛନ୍ତି ଯେ ଆମେରିକାବାସୀମାନେ କଳକାରଖାନାର କୁପରିଣାମ ଅଙ୍ଗେ ଅଙ୍ଗେ ଲାଭେଇଲେଣି । ସେମାନେ କଳ-ଦାନବର କବଳରୁ ମୁକ୍ତିଲାଭ କରିବା ପାଇଁ ପ୍ରାଚ୍ୟ ଜଗତ ଆଡ଼କୁ ଦୃଷ୍ଟି ପକାଉଛନ୍ତି । ଗାନ୍ଧିଜୀଙ୍କ ଶିଳ୍ପ-ବିକେନ୍ଦ୍ରୀକରଣ ଦର୍ଶନରେ ଆମେରିକା ଲୋକଙ୍କର ଆସ୍ତେ ଆସ୍ତେ ବିଶ୍ୱାସ ଜମିଲାଣି । ସେମାନେ ବର୍ତ୍ତମାନ ବିଶ୍ୱାସ କରୁଛନ୍ତି ଯେ ଗାନ୍ଧିଜୀଙ୍କର ଏହି ଦର୍ଶନ ସମଗ୍ର ପୃଥିବୀକୁ ନୂଆ ଆଲୋକ ଦେଇପାରିବ ।

ମନୁଷ୍ୟ କଳକାରଖାନାର ଦାସ ହୋଇ ରହିବାକୁ ଗାନ୍ଧିଜୀ ଆଦୌ ଇଚ୍ଛୁକ ନ ଥିଲେ । କଳକାରଖାନାକୁ ମନୁଷ୍ୟ ଠିକ୍ ଠିକ୍ ଶାସନ କରି ନ ପାରିବାରୁ ହିଁ ଦୁନିଆରେ ଏତେ ଯୁଦ୍ଧ, ଅଶାନ୍ତି ଓ ରକ୍ତପାତ ସମ୍ଭବ ହେଉଅଛି । କଳକାରଖାନା ଉପରେ ନିର୍ଭର କରି ରହିଲେ ମନୁଷ୍ୟର କର୍ମଦକ୍ଷତା ଲୋପପାଏ । ତେଣୁ କଳ ଉପରେ ତା'ର କୌଣସି କର୍ତ୍ତୃତ୍ୱ ରହେନାହିଁ । କଳ ବିନା ଦୁନିଆରେ ତା'ର ସ୍ଥିତି ଅସମ୍ଭବ ହୋଇ ଉଠେ । ମଣିଷକୁ ଏପରି ନିରାଶ୍ରୟ ଓ ନିଃସହାୟ ଅବସ୍ଥାରେ ଦେଖିବା ପାଇଁ ଗାନ୍ଧିଜୀ ଆଦୌ ପସନ୍ଦ କରିପାରୁ ନ ଥିଲେ ।

ଯେଉଁ ଯନ୍ତ୍ର ପ୍ରତ୍ୟେକ ଘରଣାପୂ ସ୍ୱଚ୍ଛନ୍ଦରେ ଘରେ ଘରେ ଚଳାଇପାରିବେ, ଯାହାଦ୍ୱାରା ଦେଶରୁ ଗଧ ଖଟଣି ଓ ଶୋଷଣ ଦୂର ହୋଇପାରିବ, ଯାହା ଫଳରେ ଲୋକର କର୍ମଦକ୍ଷତା, ସୃଜନୀଶକ୍ତି ଓ ଶିକ୍ଷାର ବିକାଶ ହେବ, ଗାନ୍ଧିଜୀ ସେହି ପ୍ରକାର ଯନ୍ତ୍ରକୁ ଅଭିନନ୍ଦନ ଜଣାଇଛନ୍ତି ।

କଳ ନିର୍ଜୀବ । ତେଣୁ ତାହାର କୌଣସି ଶକ୍ତି ନାହିଁ । କେବଳ ଆମର ବ୍ୟବହାର ଉପରେହିଁ କଳର ଭଲ ମନ୍ଦ ନିର୍ଭର କରେ । କଳର ଭଲ ବ୍ୟବହାରରେ ତାହା ଆମର ଦାସ ପରି ଉପକାର କରିପାରେ ଓ ତାହାର ମନ୍ଦ ବ୍ୟବହାରରେ ସେ ପ୍ରଭୁ ପରି ଆମ ଉପରେ କର୍ତ୍ତୃତ୍ୱ ବିସ୍ତାର କରିପାରେ । ଯଦି ଏହା ଲୋକସାଧାରଣଙ୍କର ଶ୍ରମଶକ୍ତିକୁ ଶୋଷଣ କରେ, ତା'ହେଲେ ସେ ଆମର ପ୍ରଭୁ ହୋଇ ଉଠେ । କିନ୍ତୁ ଏହା ଯଦି କର୍ମଦକ୍ଷତାର ବୃଦ୍ଧି ସାଧନ କରେ, ତା'ହେଲେ ସେ ଦାସ ପରି ଆମର ଉପକାର କରେ ଓ ଆମର ଇଚ୍ଛାନୁଯାୟୀ ସେ ଆମକୁ ସାହାଯ୍ୟ କରେ ।

ଶିଳ୍ପର କେବଳ ବିକେନ୍ଦ୍ରୀକରଣ ହୋଇଗଲେ ଯେ ଏହା ଶୋଷଣରହିତ ହୋଇଯିବ, ତାହା ବିଚାରିବା ଭୁଲ । ଉଦାହରଣ ସ୍ୱରୂପ ବଡ଼ ଚିଆଣରେ କୌଣସି କଳର ବ୍ୟବହାର ନ ଥିଲେ ମଧ୍ୟ ଏଥିରେ ଶୋଷଣ ପୂରି ରହିଛି । ସେହିପରି ଜାପାନ ତା'ର କୁଟୀରଶିଳ୍ପଜାତ ଦ୍ରବ୍ୟକୁ ମଧ୍ୟ ବିଦେଶୀ ବଜାରରେ ବିକ୍ରି କରିବା ପାଇଁ ସାମ୍ରାଜ୍ୟବାଦୀ ମନୋବୃତ୍ତି ଗ୍ରହଣ କରିଥିଲା । ଉଦାହରଣ ସ୍ୱରୂପ ଚୀନ୍ ଦେଶକୁ ଲାଭକର ବଜାରରେ ପରିଣତ କରିବା ତାହାର ଉଦ୍ଦେଶ୍ୟ ଥିଲା ।

ସାଧାରଣତଃ ଶିଳ୍ପର ବିକେନ୍ଦ୍ରୀକରଣ ଦ୍ୱାରା ଶୋଷଣର ହ୍ରାସ ଘଟେ; କିନ୍ତୁ ସବୁ କ୍ଷେତ୍ରରେ ଏହା ଲାଗୁ ହୁଏ ନାହିଁ ।

ଯେଉଁ ଜିନିଷ ହାତରେ ତିଆରି ହୋଇ ନ ପାରିବ, କେବଳ ତାହାକୁହିଁ କଳ ସାହାଯ୍ୟରେ ତିଆରି କରିବାକୁ ହେବ । ହିଂସାର କଳ ଆଜିପର୍ଯ୍ୟନ୍ତ ପୃଥିବୀକୁ ଭାଙ୍ଗିବାରେ ଲାଗିରହିଛି; କିନ୍ତୁ ବାପୁଜୀଙ୍କ ଅହିଂସାର କଳ ପୃଥିବୀକୁ ଗଢ଼ିବାରେ ନିଯୋଜିତ ହେବ ।

# ଶିଳ୍ପର ଜାତୀୟକରଣ

ବର୍ତ୍ତମାନ ପରିସ୍ଥିତିରେ ଭାରତର ଅର୍ଥନୈତିକ ସଙ୍କଟକୁ ସୁଧାରିବାକୁ ହେଲେ ବିଦେଶରୁ ଆସୁଥିବା ଆମଦାନି ପରିମାଣକୁ ଯେତେ ଦୂର ସମ୍ଭବ କମାଇ ଦେବାକୁ ହେବ । ଆବଶ୍ୟକତା ଦୃଷ୍ଟିରୁ ଆମ୍ଭମାନଙ୍କୁ ଆତ୍ମନିର୍ଭରଶୀଳ ହେବା ପାଇଁ ପ୍ରାଣାନ୍ତ ପରିଶ୍ରମ କରିବାକୁ ହେବ । ଭାରତରେ ଲୋକଶକ୍ତିର ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ଯେଉଁ ଜିନିଷ କୁଟୀରଶିଳ୍ପଦ୍ୱାରା ତିଆରି ହୋଇପାରିବା ସମ୍ଭବ, ତାହାର କେନ୍ଦ୍ରୀକୃତ ଉତ୍ପାଦନ ବ୍ୟବସ୍ଥା ପୂରାପୂରି ନିଷିଦ୍ଧ ହେବା ଦରକାର । ଯେଉଁ ଅତ୍ୟାବଶ୍ୟକ ଜିନିଷ ହାତେ ହାତେ ତିଆରି ହେବା ସମ୍ଭବ ନୁହେଁ, ତାହାର ଉତ୍ପାଦନ ପାଇଁ ବୃହଦାକାର ଶିଳ୍ପକାରଖାନା ବସାଇବାକୁ କାହାର କୌଣସି ଆପତ୍ତି ନାହିଁ; କିନ୍ତୁ ଏହିସବୁ ବୃହଦାକାର ଶିଳ୍ପକାରଖାନା-ଗୁଡ଼ିକର ଜାତୀୟକରଣ ହେବା ସର୍ବାଦୌ ଆବଶ୍ୟକ । ନଚେତ୍

ଦେଶରେ ଗାନ୍ଧିଜୀଙ୍କ କଳ୍ପିତ ଶ୍ରେଣୀ ଓ ଶୋଷଣହୀନ ସମାଜ ଗଠନ ଅସମ୍ଭବ ହୋଇଉଠିବ ।

ଶିଳ୍ପର କେନ୍ଦ୍ରୀକରଣ ବ୍ୟବସ୍ଥାକୁ କୌଣସିମତେ ପ୍ରଶ୍ରୟ ଦିଆଯାଇ ନ ପାରେ । ଏହାଦ୍ୱାରା ଲାଭ ତୁଳନାରେ କ୍ଷତି ଅଧିକ ହୁଏ । କିନ୍ତୁ ଅନେକ ସମୟରେ ବ୍ୟାଧି ଦୂର କରିବା ପାଇଁ ଯେପରି କମ୍ ପରିମାଣରେ ବିଷର ବ୍ୟବହାର ଅନିବାର୍ଯ୍ୟ ହୋଇ ଉଠେ, ସେହିପରି ସେବାମନୋଭାବଦ୍ୱାରା ପରିଚାଳିତ ଶିଳ୍ପର କେନ୍ଦ୍ରୀକରଣ କେତେକ ଭଲ ଫଳ ଦିଏ । ବିଦ୍ୟୁତ୍‌ଶକ୍ତି, ଜାହାଜ କାରଖାନା, ଯାନବାହନ, ରେଳଇଞ୍ଜିନ୍ କାରଖାନା, ଅସ୍ତ୍ରଶସ୍ତ୍ର କାରଖାନା, ଖଣି ବ୍ୟବସାୟ ପ୍ରଭୃତି କେତେକ ଶିଳ୍ପର ବିକେନ୍ଦ୍ରୀକରଣ ଆଦୌ ସମ୍ଭବ ନୁହେଁ । ଏସବୁ କ୍ଷେତ୍ରରେ କେନ୍ଦ୍ରୀକୃତ ବୃହଦାକାର ଶିଳ୍ପବ୍ୟବସ୍ଥା ଦ୍ୱାରା ସେସବୁର ଉତ୍ପାଦନ କରିବାକୁ ଆମ୍ଭେମାନେ ଏକରକମ ବାଧ୍ୟ । କିନ୍ତୁ ଏହିସବୁ ଶିଳ୍ପର ଉତ୍ପାଦନ ଦାୟିତ୍ୱ ବ୍ୟକ୍ତିବିଶେଷଙ୍କ ହସ୍ତରେ ନ୍ୟସ୍ତ ହେଲେ ଦେଶ ବିପନ୍ନ ହେବ । ତେଣୁ ଏସବୁ ବୃହଦାକାର ଶିଳ୍ପର ଜାତୀୟକରଣ କରିବାକୁହିଁ ହେବ ।

ଦେଶରେ ଅର୍ଥନୈତିକ ବିକାଶ ଦିଗରେ କଳକାରଖାନାର ଯେ ଆବଶ୍ୟକତା ରହିଛି, ଗାନ୍ଧିଜୀ ତାହା ଅସ୍ୱୀକାର କରିନାହାନ୍ତି । ଅନ୍ୟକୁ ଶୋଷଣ କରିବା ଯେପରି ଅନୁଚିତ, ଅନ୍ୟଦ୍ୱାରା ଶୋଷିତ ହେବାକୁ ସୁବିଧା ଦେବା ମଧ୍ୟ ସେହିପରି ଅନ୍ୟାୟ । ତେଣୁ ପ୍ରତ୍ୟେକ ଦେଶକୁ ଆତ୍ମରକ୍ଷା ସକାଶେ ଶକ୍ତି ସଞ୍ଚୟ କରିବାକୁ ହେବ । ନଚେତ୍ ଦୁର୍ବଳ ପ୍ରବଳର ଶୋଷଣକୁ ସ୍ୱାଗତ କରି ଆଣିବା ଦୋଷରେ ଦୋଷୀ ହେବ । ଏ ଦୃଷ୍ଟିରୁ

ଦେଶର ଅର୍ଥନୀତିରେ କଳକାରଖାନାକୁ ଆଦୌ ସ୍ଥାନ ନ ଦେବା ଠିକ୍ ନୁହେଁ । ଆମ୍ଭମାନଙ୍କୁ ଆତ୍ମରକ୍ଷା ଦୃଷ୍ଟିରୁ କେତେକ କ୍ଷେତ୍ରରେ କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାର ଆଶ୍ରୟ ନେବାକୁ ହିଁ ହେବ ।

କେବଳ ଜିନିଷପତ୍ରର ଉତ୍ପାଦନ ବୃଦ୍ଧିରେ ଜାତିର ଅଗ୍ରଗତି ନିର୍ଭର କରେନାହିଁ । କାରଣ ଏହି ବସ୍ତୁ ଉତ୍ପାଦନର ଅଭିବୃଦ୍ଧିରେ ଲୋକସାଧାରଣଙ୍କର ଯଦି ଅଭାବମୋଚନ ନ ହେଲା, ତାହେଲେ ସେ ଉତ୍ପାଦନବୃଦ୍ଧିରେ କୌଣସି ମୂଲ୍ୟନାହିଁ । ଯଦି ଆମର ଶିଳ୍ପୋନ୍ନତି ଫଳରେ କେବଳ ଲୋକଙ୍କ ହାତକୁ ଅଧିକ ଟଙ୍କା ଆସିଲା ଅଥଚ ଖାଦ୍ୟାଭାବରୁ ସେମାନେ ଭୋକ ଉପାସରେ ସଡ଼ିଲେ, ତା'ହେଲେ ସେପରି ଶିଳ୍ପୋନ୍ନତି ଉନ୍ନତିର ଲକ୍ଷଣ ନୁହଁ । କେବଳ ଲାଭଦୃଷ୍ଟିରୁ ନ ଦେଖି ଲୋକଙ୍କର ଅଭାବ ମୋଚନ ଦୃଷ୍ଟିରୁ ଦେଶର ଉତ୍ପାଦନ ନିୟନ୍ତ୍ରିତ ହେବା ଆବଶ୍ୟକ । ଏ ଦୃଷ୍ଟିରୁ ସରକାରଙ୍କର କର୍ତ୍ତୃତ୍ୱାଧୀନରେ ବୃହଦାକାର ଶିଳ୍ପପ୍ରତିଷ୍ଠାନଗୁଡ଼ିକ ପରିଚାଳିତ ହେବା ଦରକାର । ବ୍ୟକ୍ତିବିଶେଷର ଲାଭ ଓ ଲୋଭ ଉପରେ ଏପରି କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥା ଛାଡ଼ିଦେବା ଅର୍ଥ ଦେଶ ଓ ଜାତିର ଆତ୍ମହତ୍ୟା ।

ଗାନ୍ଧିଜୀଙ୍କଠାରେ ଆଦର୍ଶବାଦ ଓ ବାସ୍ତବବାଦର ମଧୁର ମିଳନ ଘଟିଛି । ସେ ଜଣେ ବାସ୍ତବବାଦୀ ହିସାବରେ କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାକୁ ଏକବାରେ ହସି ଉଡ଼ାଇ ଦେଇନାହାନ୍ତି । କିନ୍ତୁ ସ୍ୱାଧୀନ ମାନବର ସ୍ୱାଧୀନତା ଓ ବ୍ୟକ୍ତିତ୍ୱ କଳହାଗ ଲୁପ୍ତ ହେବାକୁ ସେ ପସନ୍ଦ କରୁ ନ ଥିଲେ । ଅଜକାଲି ତଥା-

କଥିତ ସଭ୍ୟଦେଶମାନଙ୍କରେ କଳର ସାହାଯ୍ୟ ବିନା ଲୋକଙ୍କର ଜୀବନଧାରଣ ଏକରକମ ଅସମ୍ଭବ ହୋଇଅଛି । ସେମାନେ ଦୃଢ଼ ପଦେ ପଦେ କଳଦାନବର ଦାସ ହୋଇ ପଡ଼ିଛନ୍ତି । କିନ୍ତୁ ଏକ ଜଡ଼ ପଦାର୍ଥ ଜୀବନ୍ତ ମଣିଷ ଉପରେ ଏପରି ପ୍ରଭୁତ୍ୱ ବିସ୍ତାର କରିବା କଥାଟାକୁ ଗାନ୍ଧିଜୀ ଆଦୌ ପସନ୍ଦ କରିପାରି ନାହାନ୍ତି ।

କୁଟୀରଶିଳ୍ପ ଜରିଆରେ ଦେଶକୁ ଶିଳ୍ପସମୃଦ୍ଧ କରିବା ପାଇଁ କେତେକ ଲୋକ ରାଜି ହେଉନାହାନ୍ତି । ସେମାନଙ୍କ ମତରେ ଦେଶର ଅର୍ଥନୈତିକ ବିକାଶ ପାଇଁ ଆମ୍ଭେମାନେ ବିଶେଷ ଭାବରେ କେନ୍ଦ୍ରୀକୃତ ଶିଳ୍ପବ୍ୟବସ୍ଥାର ଆଶ୍ରୟ ନେବା ଉଚିତ । ପ୍ରତ୍ୟେକ ଶିଳ୍ପପ୍ରତିଷ୍ଠାନ ରାଷ୍ଟ୍ରଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ହେବା ଉଚିତ ବୋଲି ସେମାନେ ମତ ଦିଅନ୍ତି । କିନ୍ତୁ ପ୍ରତ୍ୟେକ ଶିଳ୍ପର କେନ୍ଦ୍ରୀକରଣ ସପକ୍ଷରେ ଗାନ୍ଧିଜୀ ଅନୁକୂଳ ମତ ଦେଇନାହାନ୍ତି । ସେ କହିଛନ୍ତି, "ପଣ୍ଡିତ ନେହେରୁ ଚାହାନ୍ତି ଯନ୍ତ୍ରପାତିର ପ୍ରସାର; କାରଣ ସେ ବିଶ୍ୱାସ କରନ୍ତି ଯେ ଯନ୍ତ୍ରପାତିର ଯଦି ସମାଜୀକରଣ କରାଯାଏ, ତେବେ ପୁଞ୍ଜିବାଦର ସମସ୍ତ ଅନିଷ୍ଟକାରୀ ଶକ୍ତି ଲୋପ ପାଇଯିବ । ମୋ ମତ ଯେ ଯନ୍ତ୍ରପାତି ମଧ୍ୟରେ ଅନିଷ୍ଟକାରୀ ଶକ୍ତି ରହିଛି; ଯେତେ ସାମାଜିକ ନିୟନ୍ତ୍ରଣ କରାଗଲେ ମଧ୍ୟ ଏହା ଲୋପ ପାଇପାରିବ ନାହିଁ ।"

ଗାନ୍ଧିଜୀ କେତେକ କ୍ଷେତ୍ରରେ ଶିଳ୍ପର କେନ୍ଦ୍ରୀକରଣ ଅନିବାର୍ଯ୍ୟ ବୋଲି ମାନି ନେଇଛନ୍ତି । କିନ୍ତୁ ସମସ୍ତ ଶିଳ୍ପକୁ

କେନ୍ଦ୍ରୀକରଣ କରିବା ମନୋବୃତ୍ତିର ସେ ପ୍ରାଣପଣେ ବିରୋଧ କରିଛନ୍ତି । କାରଣ ସମସ୍ତ ଶିଳ୍ପର ସମାଜକରଣ ହେଲେ ମଧ୍ୟ କେନ୍ଦ୍ରୀକରଣ ଫଳରେ ନିମ୍ନଲିଖିତ ଅସୁବିଧା ସବୁ ନିଶ୍ଚୟ ଦେଖାଦେବ ।

(୧) ସମସ୍ତ ଶିଳ୍ପର ସମାଜକରଣ କରିବାକୁ ହେଲେ ବିରାଟ ପୁଞ୍ଜି ଆବଶ୍ୟକ । ଏହା ଫଳରେ ସ୍ୱୟଂ ସରକାର ପୁଞ୍ଜିପତି ହୋଇ ଉଠିବେ । ଭାରତବର୍ଷ ପରି ଗରିବ ଦେଶ ଏତେ ପୁଞ୍ଜି ଯୋଗାଡ଼ କରିବା ମଧ୍ୟ ସମ୍ଭବ ନୁହେଁ ।

(୨) ଦେଶର ଅଧିକାଂଶ ଆୟ ଶିଳ୍ପକ୍ଷେତ୍ରରେ ବିନିଯୁକ୍ତ ହେବାଦ୍ୱାରା ଅନ୍ୟାନ୍ୟ ରାଷ୍ଟ୍ରଗଠନ କାର୍ଯ୍ୟ ଅର୍ଥାଭାବ ହେତୁ ବାଧାପ୍ରାପ୍ତ ହେବ ।

(୩) ସରକାର ପୁଞ୍ଜିପତି ଓ ଶିଳ୍ପପତି ବନାଇବାକୁ ହେଲେ ଏତେ ବଡ଼ ଦାୟିତ୍ୱ ତୁଲାଇବା ପାଇଁ ବହୁତ କ୍ଷମତା ହାତକୁ ନେବା ସକାଶେ ସେ ଚେଷ୍ଟା କରିବେ । ଆଉ ମଧ୍ୟ ଦେଶର ସମସ୍ତ ଉତ୍ପାଦନରେ ସରକାରଙ୍କର କର୍ତ୍ତୃତ୍ୱ ରହିବା ଦ୍ୱାରା ରୁଷ ପରି ଏକଛତ୍ରବାଦକୁ ପ୍ରଶ୍ରୟ ଦେବାକୁ ପଡ଼ିବ । ଫଳରେ ଦେଶରେ ଗଣତନ୍ତ୍ରଶାସନ ତିଷ୍ଠି ପାରିବ ନାହିଁ ।

(୪) ଶିଳ୍ପର କେନ୍ଦ୍ରୀକରଣ ଫଳରେ ଲୋକସାଧାରଣଙ୍କର ସ୍ୱାଧୀନ ଚିନ୍ତା ଓ ବ୍ୟକ୍ତିତ୍ୱ ଆସ୍ତେ ଆସ୍ତେ ଲୋପ ପାଇଯିବାର ଦେଖାଯାଉଛି । ସେମାନେ କେବଳ ଯନ୍ତ୍ରପାତିର ଦାସ ହୋଇ ରହୁଛନ୍ତି । କଳ ସବୁ କାମ କରିଦେଉଥିବାରୁ ସେମାନଙ୍କ

ଚିନ୍ତାଶକ୍ତିର ଯଥାଯଥ ସ୍ଫୁରଣ ହୋଇପାରୁନାହିଁ । ଆମେରିକାରେ ଏହି କାରଣରୁ ଅନେକ ଲୋକ ପାଗଳ ହୋଇ ଯାଉଥିବାର ଦେଖାଯାଉଛି । ମଣିଷ କଳର ଆୟତ୍ତାଧୀନ ନ ହୋଇ କଳକୁ ଆୟତ୍ତ କରିପାରିଲେ ବିଶେଷ କୌଣସି ଅସୁବିଧା ହୁଅନ୍ତା ନାହିଁ । କିନ୍ତୁ ମଣିଷ କଳର ଦାସ ହୋଇ ପଡ଼ିଥିବାରୁ ନିଜର ବିକାଶ ଦିଗରେ ତା'କୁ ଠିକ୍ ଠିକ୍ ଲଗାଇ ପାରୁନାହିଁ । ଫଳରେ ପୃଥିବୀରେ ଆଜି ନାନାପ୍ରକାର ଅଶାନ୍ତି ଓ ଅସନ୍ତୋଷ ଦେଖାଦେଇଛି ।

(୪) ସମସ୍ତ ଶିଳ୍ପର ସାମାଜିକ ନିୟନ୍ତ୍ରଣ କରାଗଲେ ଦେଶର ଉତ୍ପାଦନ ପରିମାଣ କମିଯିବାର ଖୁବ୍ ଆଶଙ୍କା ରହିଛି । ଶିଳ୍ପପତିମାନେ ବ୍ୟକ୍ତିଗତ ଲାଭର ବଶବର୍ତ୍ତୀ ହୋଇ ଉତ୍ପାଦନ-ବୃଦ୍ଧି ପାଇଁ ଅଦମ୍ୟ ଉଦ୍ୟମ ଚଳାନ୍ତି, କିନ୍ତୁ ଶିଳ୍ପପ୍ରତିଷ୍ଠାନ-ଗୁଡ଼ିକର ଜାତୀୟକରଣ କରାଗଲେ ଶିଳ୍ପକ୍ଷେତ୍ରରେ ବ୍ୟକ୍ତିଗତ ଉଦ୍ୟମର ସମସ୍ତ ବାଟ ବନ୍ଦ ହୋଇଯିବ । ଫଳରେ ଶିଳ୍ପ ଶ୍ରମିକ ଓ କ୍ଷମତାରେ ଥିବା ଲୋକମାନେ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ନ ହେଲେ ସେମାନେ ଦେଶର ଆବଶ୍ୟକତା ଦୃଷ୍ଟିରୁ ଉତ୍ପାଦନ ପରିମାଣ ବୃଦ୍ଧି କରିବାରେ ହୁଏତ ଅବହେଳା କରିବେ । ସରକାର ମଧ୍ୟ ଶିଳ୍ପର ସମସ୍ତ ଦାୟିତ୍ୱ ବହନ କରି ବର୍ତ୍ତମାନ ଅବସ୍ଥାରେ ତାକୁ ସୁରୁଖୁରୁ ଭାବରେ ଚଳାଇ ପାରିବା ସମ୍ଭବ ନୁହେଁ । ତେଣୁ ଚୀନ୍ ଏକ କମ୍ୟୁନିଷ୍ଟ ରାଜ୍ୟ ହେଲେ ମଧ୍ୟ ସେଠାରେ ଶିଳ୍ପର ଜାତୀୟକରଣ କରାଯାଇ ନାହିଁ । ଅବଶ୍ୟ ଏହାଦ୍ୱାରା ଉତ୍ପାଦନ କମିଲେ ମଧ୍ୟ ଶିଳ୍ପକ୍ଷେତ୍ରରେ ଶୋଷଣ ଅନେକ ପରିମାଣରେ କମିଯାଇ ପାରିବ । ତେଣେ

ଶିଳ୍ପର କେବଳ କେନ୍ଦ୍ରୀକରଣ ଅପେକ୍ଷା ଜାତୀୟକୃତ କେନ୍ଦ୍ରୀକରଣ ବ୍ୟବସ୍ଥା ଶତ ଗୁଣରେ ଶ୍ରେୟଃ ।

(୬) ଶିଳ୍ପର ଯେତେ ଜାତୀୟକରଣ କରାଗଲେ ମଧ୍ୟ କେନ୍ଦ୍ରୀକରଣର ଅବଶ୍ୟମ୍ଭାବୀ କୁଫଳ ସ୍ୱରୂପ ଦେଶରେ ବେକାର-ସମସ୍ୟା ଦେଖାଦେବ । ରୁଷ ଦେଶକୁ ବାଦ୍ ଦେଲେ ଇଂଲଣ୍ଡ, ଆମେରିକା ପ୍ରଭୃତି ପ୍ରତ୍ୟେକ ଦେଶରେ ଶିଳ୍ପକେନ୍ଦ୍ରୀକରଣର ଏହି କୁପରିଣତି ଦେଖାଦେଇଛି । ରୁଷ୍ ଦେଶରେ ଲୋକସଂଖ୍ୟା ଦୃଷ୍ଟିରୁ ଅମାପ ପ୍ରାକୃତିକ ବିଭବ ରହିଥିବାରୁ ସେଠାରେ ଏ ପର୍ଯ୍ୟନ୍ତ ଅବଶ୍ୟ ବେକାରସମସ୍ୟା ଦେଖା ଦେଇନାହିଁ । କିନ୍ତୁ ରୁଷଦେଶର ଶିଳ୍ପୋନ୍ନତି ଅଳ୍ପଦିନର କଥା; ତେଣୁ ସେଠାରେ ଯେ ଦିନେ ଏ ସମସ୍ୟା ଦେଖା ନ ଦେବ, ତାହା କହିହେବ ନାହିଁ ।

(୭) ଶିଳ୍ପର ସମାଜୀକରଣ ଫଳରେ ବ୍ୟକ୍ତି-ଶୋଷଣ ଅନେକ ପରିମାଣରେ କମିଯିବ । କିନ୍ତୁ ଏହା ଫଳରେ ଜାତି ଜାତି ଓ ଦେଶ ଦେଶ ମଧ୍ୟରେ ଶୋଷଣ ବୃଦ୍ଧିପାଇବାର ଆଶଙ୍କା ରହିଛି । କାରଣ ଶିଳ୍ପର ସମାଜୀକରଣ ଫଳରେ ବ୍ୟକ୍ତିଗତ ଲାଭର ଆଶଙ୍କା ଦୂର ହୋଇପାରିଲେ ମଧ୍ୟ ବହୁ ଉତ୍ପାଦନ କମିବ ନାହିଁ; ତେଣୁ ଗୋଟିଏ ଦେଶ ତାର ଅଦ୍ଵୃତ୍ତ ଉତ୍ପାଦନକୁ କଟାଇବା ଉଦ୍ଦେଶ୍ୟରେ ଅନ୍ୟ ଦେଶ ଉପରେ ଆଖି ପକାଇବ । ଆଉ ମଧ୍ୟ ଶିଳ୍ପୋନ୍ନତ ଦେଶ ଶିଳ୍ପାନୁନ୍ନତ ଦେଶକୁ ନିଜ ହାତ-ମୁଠାରେ ରଖିବାକୁ ପ୍ରାଣପଣେ ଲାଗି ପଡ଼ିବ; ଏହା ଅତି ସ୍ୱାଭାବିକ୍ । ଏହା ଫଳରେ ବ୍ୟକ୍ତି ଶୋଷଣ ପରିବର୍ତ୍ତେ ଦଳଗତ

ଓ ଜାତିଗତ ଶୋଷଣ ଅଧିକ ତୀବ୍ର ହୋଇ ଉଠିବାର ଖୁବ୍ ଆଶଙ୍କା ରହିଛି ।

(୮) ଯନ୍ତ୍ରଶିଳ୍ପର ସମାଜୀକରଣ ଫଳରେ ବାପୁଜୀଙ୍କ ରାମରାଜ୍ୟ ବା "ଶ୍ରେଣୀ ଓ ଶୋଷଣହୀନ ସମାଜ ଗଠନ" ସମ୍ଭବ ନୁହେଁ । ବ୍ୟକ୍ତିଶୋଷଣ ବଦଳରେ ଏହାଦ୍ୱାରା ଦଳଗତ ଶୋଷଣ ଅଧିକମାତ୍ରାରେ ଦେଖାଦେବ । ଶିଳ୍ପପ୍ରତିଷ୍ଠାନଗୁଡ଼ିକ ଚଳାଇବାକୁ ହେଲେ ବିଭିନ୍ନ ଶ୍ରେଣୀର କର୍ମଚାରୀଙ୍କୁ ନିଯୁକ୍ତ କରିବାକୁ ହେବ; ତେଣୁ ସମାଜରୁ ଶ୍ରେଣୀଭେଦ ଦୂର ହୋଇ ପାରିବ ନାହିଁ । ଆଉ ମଧ୍ୟ ଶିଳ୍ପର କେନ୍ଦ୍ରୀକରଣ ଫଳରେ କ୍ଷମତାର କେନ୍ଦ୍ରୀକରଣ ଅତି ସ୍ୱାଭାବିକ; ତେଣୁ ସରକାରୀ କର୍ମଚାରୀଙ୍କ ହାତରେ ଅଧିକ କ୍ଷମତା ଦେବାକୁ ହେବ । ନଚେତ୍ ଶିଳ୍ପାନୁଷ୍ଠାନଗୁଡ଼ିକର ସୁଶୃଙ୍ଖଳ ପରିଚାଳନା ସମ୍ଭବ ହେବନାହିଁ । ଏ ଦୃଷ୍ଟିରୁ ନାନାପ୍ରକାର କୃତ୍ରିମ ଶ୍ରେଣୀବିଭେଦ ସୃଷ୍ଟି ହେବ ।

(୯) କୁଟୀରଶିଳ୍ପୀର ସୃଜନଶକ୍ତିର ବିକାଶ ସାଧନ ହୁଏ; କିନ୍ତୁ କଳକାରଖାନାରେ ଥିବା ଶ୍ରମିକମାନଙ୍କର ଏହି ଶକ୍ତି ଲୋପ ପାଇଯାଏ । ବୃହଦାକାର ଶିଳ୍ପର ଶ୍ରମିକମାନେ ସେମାନଙ୍କର କଳ୍ପନା ଓ ସୃଜନଶକ୍ତିର ବିକାଶସାଧନ ପାଇଁ କୌଣସି ସୁବିଧାସୁଯୋଗ ପାଆନ୍ତି ନାହିଁ । କିନ୍ତୁ କୁଟୀରଶିଳ୍ପ ରଚନାରେ ବୁଦ୍ଧିବୃତ୍ତିର ବିଶେଷ ବିକାଶ ଘଟେ । ଏ ଦୃଷ୍ଟିରୁ ଯନ୍ତ୍ରଶିଳ୍ପରେ ଦେଶର ମୃତ୍ୟୁ ଓ କୁଟୀରଶିଳ୍ପରେ ତା'ର ବିକାଶ ନିର୍ଭର କରେ । ଉଦାହରଣ ସ୍ୱରୂପ ବଡ଼ ବଡ଼ କଳକାରଖାନାରେ ଜଣେ ସାଧାରଣ ଶ୍ରମିକ ସମୁଦାୟ କାମର ଏକ

ଅତି ଶ୍ରେଷ୍ଠ ଅଂଶର ଦାୟିତ୍ୱ ନିଏ । ଜଣେ ଯଦି ଗୋଟାଏ ଜିନିଷ୍ କରୁଛି ତ ଜୀବନଯାକ ସେ ତାହା କରିବ; କିନ୍ତୁ କୁଟୀରଶିଳ୍ପୀ ସାଧାରଣତଃ ଗୋଟିଏ ପୂର୍ଣ୍ଣ ଜିନିଷ ତିଆର କରିବାର ପୂର୍ଣ୍ଣ ଦାୟିତ୍ୱ ନିଏ; ତେଣୁ କୁଟୀରଶିଳ୍ପୀ ଗୋଟିଏ ଜିନିଷ ତିଆରି କରିବାରେ ପୂର୍ଣ୍ଣ ଅଭିଜ୍ଞତା ଲାଭକରେ ।

(୧୦) କୁଟୀରଶିଳ୍ପୀ ନିଜର ସୃଜନଶକ୍ତିର ପରିଚୟରୁ ଚାଲି ଆନନ୍ଦ ଅନୁଭବ କରେ । ନିଜର ସୃଷ୍ଟିରେ ସେ ଦୁନିଆର ସମସ୍ତ ଦୁଃଖ ଯନ୍ତ୍ରଣା ଭୁଲିଯାଏ । କିନ୍ତୁ ଶ୍ରମିକ ଏହି ଆନନ୍ଦ ଅନୁଭବ କରିବାର ସୁଯୋଗ ପାଏନାହିଁ; ବରଂ ବ୍ୟକ୍ତିଗତ ଲୋଭ ଲାଳସାରେ କ୍ରମଶଃ ମୃତ୍ୟୁର ନିକଟବର୍ତ୍ତୀ ହେଉଥାଏ ।

(୧୧) କୁଟୀରଶିଳ୍ପର ବିକାଶରେ କଳାର ବିକାଶ ହୁଏ । କଳର ଉଦ୍ଭାବନ ପୂର୍ବରୁ ଲୋକମାନେ ବଡ଼ କଳାନିପୁଣ ହୋଇ ପାରୁଥିଲେ; କିନ୍ତୁ ଯନ୍ତ୍ରଦାନବର କବଳରେ ପଡ଼ି କଳାର ଆଜି ଅଧୋଗତି ଘଟିଛି । ବ୍ୟକ୍ତିଗତ ଚେଷ୍ଟାର ଅଭାବରୁ ଲୋକଙ୍କ ମଧ୍ୟରୁ କଳାରୁଚି ଓ ସୌନ୍ଦର୍ଯ୍ୟଜ୍ଞାନ ଲୋପ ପାଉଛି ।

(୧୨) ଯନ୍ତ୍ର-ରାକ୍ଷସର କବଳରେ ପଡ଼ି ଜାତିର ନୈତିକତା ଓ ଆଧ୍ୟାତ୍ମିକତା ଆସ୍ତେ ଆସ୍ତେ ଲୋପ ପାଉଛି । ଲୋକମାନେ ଅଧିକ ଜଡ଼ବାଦୀ ହୋଇ ଉଠୁଛନ୍ତି । ବଞ୍ଚି ରହିବା ପାଇଁ କୌଣସି ମିତି ଅମିତର ବିଚାର ରହୁ ନ ଥିବାରୁ ନାନାପ୍ରକାର ସାମାଜିକ ବିଭ୍ରାଟ ଦେଖାଦେଉଛି । ଉତ୍ପାଦନର କେନ୍ଦ୍ରୀକରଣ ଫଳରେ କଳାବଜାର, ଲାଞ୍ଚମିଛ, ପ୍ରିୟାପ୍ରୀତି ତୋଷଣ ପ୍ରଭୃତି

ବ୍ୟାପୁଛି । ତେଣୁ ଜାତିକୁ ବଞ୍ଚାଇ ରଖିବାକୁ ହେଲେ କୁଟୀର-ଶିଳ୍ପର ଆଶ୍ରୟ ନେବାକୁ ହିଁ ହେବ ।

(୧୩) ଯନ୍ତ୍ରକୁ ଥରେ ପ୍ରଶ୍ରୟ ଦେଲେ ଆଉ ତା' କବଳରୁ ମୁକ୍ତି ପାଇବା ଅସମ୍ଭବ । କାରଣ ଗୋଟିଏ କଳ ତିଷ୍ଠି ରହିବା ପାଇଁ ଅନ୍ୟାନ୍ୟ ଅନେକ କଳ ଉପରେ ନିର୍ଭର କରେ ; ତେଣୁ ଥରେ ଗୋଟିଏ କଳ ବସାଇଲେ ଆସ୍ତେ ଆସ୍ତେ ଗୋଟିକ ପରେ ଗୋଟିଏ ଏହିପରି ଶିଳ୍ପର ପୂରା ଯନ୍ତ୍ରୀକରଣ ହୋଇଉଠେ । ପରେ ତାକୁ ରୋକିବାକୁ କୌଣସି ବାଟ ରହେ ନାହିଁ ।

(୧୪) ଶିଳ୍ପର କେନ୍ଦ୍ରୀକରଣ ଫଳରେ ଉତ୍ପାଦନର କେନ୍ଦ୍ରୀକରଣ ହୋଇଯାଏ ; ତେଣୁ ଉତ୍ପାଦନର ବଣ୍ଟନ ପାଇଁ କୃତ୍ରିମ ଉପାୟ ସବୁ ଅବଲମ୍ବନ କରିବାକୁ ପଡ଼େ । ଉଦାହରଣ ସ୍ୱରୂପ ଲୁଗାକଳ ନିକଟକୁ ବିଭିନ୍ନ ଅଞ୍ଚଳରୁ କପାଯାଏ । ଲୁଗା ତିଆରି ହୋଇ ତାହା ପୁଣି ବିଭିନ୍ନ ଅଞ୍ଚଳରେ ବଣ୍ଟାଯାଏ । କିନ୍ତୁ କୁଟୀରଶିଳ୍ପରେ ଉତ୍ପାଦନ ହିଁ ସ୍ୱାଭାବିକ ବଣ୍ଟନର କାର୍ଯ୍ୟ କରେ; ତେଣୁ ଜାତୀୟସମ୍ପଦର ସ୍ୱାଭାବିକ ବଣ୍ଟନ ସକାଶେ କୁଟୀରଶିଳ୍ପ ଗ୍ରହଣୀୟ । କୁଟୀରଶିଳ୍ପ ଜରିଆରେ ଦେଶର ଅହିଂସ ସାମ୍ୟବାଦ ପ୍ରତିଷ୍ଠାକରିବା ସହଜ ହୋଇ-ଉଠେ । କେନ୍ଦ୍ରୀକୃତ ଉତ୍ପାଦନପ୍ରଣାଳୀରେ ଲୋକଙ୍କୁ ପରମୁଖା-ପେକ୍ଷୀ ହେବାକୁ ପଡ଼େ । ଫଳରେ ସେମାନଙ୍କର ଆତ୍ମନିର୍ଭର-ଶୀଳତା ଲୋପ ପାଇଯାଏ ।

(୧୫) ଶିଳ୍ପର କେନ୍ଦ୍ରୀକରଣ ଫଳରେ ( ଜାତୀୟକରଣ ସତ୍ତ୍ୱେ ) ଆତ୍ମନିର୍ଭରଶୀଳ ଅଞ୍ଚଳଗଠନ କରିବା ସମ୍ଭବ ହୁଏ ନାହିଁ । ଯେଉଁ ଅଞ୍ଚଳରେ ଶିଳ୍ପାନୁଷ୍ଠାନଗୁଡ଼ିକ କେନ୍ଦ୍ରୀଭୂତ ହୁଏ, ସେହି ଅଞ୍ଚଳର ଆର୍ଥିକ ଉନ୍ନତି ଘଟେ ଓ ସେଠାର ଲୋକେ କଳକାରଖାନାରେ ଅଧିକ କାମ ପାଆନ୍ତି । କିନ୍ତୁ ଅନ୍ୟାନ୍ୟ ଅଞ୍ଚଳର ଲୋକେ ବେକାର ହୁଅନ୍ତି ଓ ସେସବୁ ସ୍ଥାନର ସମ୍ପତ୍ତି ଆସ୍ତେ ଆସ୍ତେ ଧୋଇ ହୋଇ ଶିଳ୍ପୋନ୍ନତ ଅଞ୍ଚଳ ଚାଲିଯାଏ ।

(୧୬) ଶିଳ୍ପର କେନ୍ଦ୍ରୀକରଣ କୃଷିର ବିକାଶରେ ପ୍ରଧାନ ଅନ୍ତରାୟ ହୋଇଉଠେ । କିନ୍ତୁ କୃଷକ କୁଟୀରଶିଳ୍ପକୁ ଏକ ଗୌଣ ଧନ୍ଦା ରୂପେ ଗ୍ରହଣ କରେ; ତେଣୁ କୁଟୀରଶିଳ୍ପ କୃଷକକୁ ଅବସର ସମୟରେ କିଛି କିଛି କାମ ଓ ଅର୍ଥ ଯୋଗାଇ ତାହାର କୃଷିକାର୍ଯ୍ୟରେ ପ୍ରକୃତ ସାହାଯ୍ୟ କରେ । କୃଷି ଓ କୁଟୀରଶିଳ୍ପ ଜଣେ ଲୋକଦ୍ୱାରା କରି ହୁଏ । କିନ୍ତୁ ବୃହଦାକାର ଶିଳ୍ପସଂଗଠନରେ କାମ କରୁଥିବା ଶ୍ରମିକମାନେ ଗାଁଗହଳର କୃଷିବାସ ଛାଡ଼ି ଅଧିକ ପାଇବା ଆଶାରେ ସହରମାନଙ୍କୁ ଯାଆନ୍ତି ଓ କଳକାରଖାନାରେ କାମ କରନ୍ତି । ଗାଁ ଗହଳରୁ ହୃଷ୍ଟପୁଷ୍ଟ ଲୋକେ ସହରକୁ ଚାଲି ଯାଉଥିବାରୁ ଦେଶର କୃଷିକାର୍ଯ୍ୟ ବାଧା ପାଉଛି ଓ ମଫସଲର ଉନ୍ନତି ସୁଦୂର ପରାହତ ହୋଇ ରହୁଛି । ପ୍ରକୃତରେ କହିବାକୁ ଗଲେ ଅସ୍ଥିକଙ୍କାଳସାର ଲୋକଙ୍କ ହାତରେ ହିଁ ଆଜି କୃଷି ପରି ଦେଶର ପ୍ରଧାନ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ରହିଛି । ଏହି ଅବସ୍ଥା ନ ସୁଧୁରିବା ପର୍ଯ୍ୟନ୍ତ ଆମ ଦେଶର ଅର୍ଥନୈତିକ ଅଗ୍ରଗତି ସମ୍ଭବ

ନାହିଁ । ଭାରତର ଗାଁଗହଳ ବସି ନ ଉଠିବା ପର୍ଯ୍ୟନ୍ତ କେତୋଟି ମୁଷ୍ଟିମେୟ ସହର ଓ ନଗରକୁ ସମୃଦ୍ଧିଶାଳୀ କରିବାକୁ ଚେଷ୍ଟା-କରିବା ଏକ ଆତ୍ମଘାତୀ ନୀତି ବ୍ୟତୀତ ଅନ୍ୟ କିଛି ନୁହେଁ ।

କଳକାରଖାନାରେ କଷ୍ଟହୀନ କାମ କଲା ପରେ ଶ୍ରମିକ-ମାନେ ଆଉ କୁଟିରର ହାତ ଦେବା ସମ୍ଭବ ନୁହେଁ । ଇଂଲଣ୍ଡରେ ଏହା ଏକ ବିରାଟ ସମସ୍ୟା ହୋଇ ଉଠିଛି ; କିନ୍ତୁ ଭାରତ ପାଇଁ ଏବେ ବି ସମୟ ଅଛି । ଯନ୍ତ୍ରଶିଳ୍ପଦ୍ୱାରା କବଳିତ ଶ୍ରମିକଙ୍କ ସଂଖ୍ୟା ଏଠାରେ ଅଧିକ ନୁହେଁ; ତେଣୁ ଏହି ସଂଖ୍ୟାକୁ ବୃଦ୍ଧି ପାଇବାକୁ ଦେବା ସଙ୍ଗତ ନୁହେଁ ।

(୧୨) କୁଟୀରଶିଳ୍ପକୁ ବାଦ୍ ଦେଇ ଆମ୍ଭେମାନେ ଯନ୍ତ୍ରଶିଳ୍ପ ଉପରେ ନିର୍ଭର କରି ଚଳିପାରିବା ନାହିଁ । କାରଣ ଆମର କେତେକ ଅତ୍ୟାବଶ୍ୟକ ଜିନିଷକୁ ଉତ୍ପାଦନ କରିବା ପାଇଁ କଳ ପୂରାପୂରି ଅସମର୍ଥ । ଯନ୍ତ୍ରଶିଳ୍ପଦ୍ୱାରା ବହୁ ଉତ୍ପାଦନ ସମ୍ଭବ । କିନ୍ତୁ ବ୍ୟକ୍ତିଗତ ରୁଚି ଓ ଆବଶ୍ୟକତା ଦୃଷ୍ଟିରୁ ଏହା ଅଳ୍ପ ଜିନିଷ ଉତ୍ପାଦନ କରି ନ ପାରେ; ତେଣୁ ପାଞ୍ଚ, ପାଟଶାଢ଼ୀ, କାନିଆ, ମଠା, ଏଣ୍ଡି ପ୍ରଭୃତି କେତେକ ପ୍ରକାର ଜିନିଷ ବୃହଦା-କାର ଶିଳ୍ପସାହାଯ୍ୟରେ ଉତ୍ପାଦନ କରିବା ସମ୍ଭବ ହୁଏ ନାହିଁ । ଯେଉଁ ଜିନିଷ ପାଇଁ କଞ୍ଚାମାଲ ଓ ବୃହଦାକାର ଅଭାବ ଥାଏ, ସେସବୁ ଜିନିଷର ଉତ୍ପାଦନ କଳଦ୍ୱାରା ସମ୍ଭବ ନୁହେଁ । ଏହି କାରଣରୁ କୌଣସି ଦେଶରେ କୁଟୀରଶିଳ୍ପ ମରି ଯାଇନାହିଁ । ପୁଞ୍ଜିବାଦୀ ଓ ଶିଳ୍ପସମୃଦ୍ଧ ଦେଶମାନେ ମଧ୍ୟ କୁଟୀରଶିଳ୍ପକୁ ବାଦ୍ ଦେଇ ପାରି ନାହାନ୍ତି । ସେହିପରି ଗାନ୍ଧିଜୀ ବୃହଦାକାର ଶିଳ୍ପକୁ ମଧ୍ୟ ପୂରାପୂରି ବାଦ୍ ଦେବାକୁ ଚାହୁଁ ନ ଥିଲେ; କିନ୍ତୁ ଭାରତର ଅବସ୍ଥା

ଦୃଷ୍ଟିରୁ କୁଟୀରଶିଳ୍ପ ଉପରେ ସେ ଅଧିକ ଗୁରୁତ୍ୱ ଦେଇଅଛନ୍ତି । ପୂର୍ବ ସରକାରୀ ସାହାଯ୍ୟ, ସହଯୋଗ ଓ ଉତ୍ସାହ ପାଇଲେ ଦେଶରେ ନଷ୍ଟପ୍ରାୟ କୁଟୀରଶିଳ୍ପ ତିଷ୍ଠି ପାରିବ ।

(୧୮) ଶିଳ୍ପର କେନ୍ଦ୍ରୀକରଣଦ୍ୱାରା ଜାତୀୟ ସ୍ୱାସ୍ଥ୍ୟର ଅବନତି ଘଟୁଥିବାର ଦେଖାଯାଉଛି । ବସବାସ ଓ ଖାଦ୍ୟ-ପେୟର ଅସୁବିଧାହେତୁ ଅନେକ ଶ୍ରମିକ ଯକ୍ଷ୍ମା ପ୍ରଭୃତି ଭୟଙ୍କର ରୋଗରେ ପଡ଼ୁଛନ୍ତି । ନିର୍ଦ୍ଦିଷ୍ଟ ସ୍ଥାନରେ ଅନେକ ଶ୍ରମିକ ରହୁଥିବାରୁ ଓ କଳକାରଖାନାରୁ କୋଇଲାଧୂଆଁ ବାହାରୁଥିବାରୁ ଯକ୍ଷ୍ମାକ୍ରାନ୍ତ ହୋଇ ଜାତୀୟ ସ୍ୱାସ୍ଥ୍ୟର ଅବନତିରେ ସାହାଯ୍ୟ କରୁଥିବା ଅତି ସ୍ୱାଭାବିକ ହୋଇ ପଡ଼ୁଛି । କିନ୍ତୁ କୁଟୀରଶିଳ୍ପରେ ସ୍ୱାସ୍ଥ୍ୟହାନିର କୌଣସି ଆଶଙ୍କା ନାହିଁ । ସରୁ କଳଚାଉଳ ଓ କଳଅଟା ଖାଇବା ଦ୍ୱାରା ଲୋକଙ୍କ ମଧ୍ୟରେ ଅନେକ ରୋଗ ବ୍ୟାପୁଛି । ଆଜି ମଧ୍ୟ ଶିଳ୍ପର କେନ୍ଦ୍ରୀକରଣଦ୍ୱାରା ଅନେକ ଦୁର୍ଘଟଣାଜନିତ ଜୀବନହାନି ଘଟୁଥିବାର ସମ୍ବାଦ ପ୍ରକାଶିତ ହେଉଥିବାର ଦେଖାଯାଉଛି । ଆମେରିକାରେ ବିଗତ ପ୍ରଥମ ମହାଯୁଦ୍ଧରେ ୫୦ ହଜାର ଲୋକ ମରିଥିଲେ ସୁଦ୍ଧା ପ୍ରତିବର୍ଷ କଳକାରଖାନା ଓ ମୋଟର ଦୁର୍ଘଟଣା ଦ୍ୱାରା ପ୍ରାୟ ସେତିକି ଲୋକ ମରୁଛନ୍ତି ।

(୧୯) କଳ ଯଦି ସବୁ କାମ କରିଦିଏ, ତାହେଲେ ଲୋକମାନେ ଆଳସ୍ୟର ବଶବର୍ତ୍ତୀ ହୋଇ ନାନାପ୍ରକାର ରୋଗରେ ପଡ଼ିବେ । ଅଳସ ମନରେ ନାନାବିଧ ଦୁଶ୍ଚିନ୍ତା ମଧ୍ୟ ଦେଖାଦେବ । ଏହା ଫଳରେ ଲୋକଙ୍କର ମାନସିକ ବିକୃତି ଘଟିବା ସଙ୍ଗେ ସଙ୍ଗେ ନୈତିକ ଅଧୋଗତି ମଧ୍ୟ ଦେଖାଦେଇଛି ଓ ଦେବ । ଆମେରିକା ଦେଶରେ ଏହିପରି ନୈତିକ ଅଧୋଗତିର ଉପକ୍ରମ ହେଉଛି ।

(୨୦) କେନ୍ଦ୍ରୀକୃତ ଶିଳ୍ପର ବିକାଶରେ ଜାତୀୟ ଏକତା ନଷ୍ଟ ହେବାର ଆଶଙ୍କା ରହିଛି । ଆଜିକାଲି ଯେତେ କଳ-କାରଖାନା ବ୍ୟାପୁଛି, ଶ୍ରମିକମାନଙ୍କର ଧର୍ମଘଟ, ସତ୍ୟାଗ୍ରହ ପ୍ରଭୃତି ସେତେ ଅଧିକ ଦେଖାଦେଉଛି । ଶ୍ରମିକମାନଙ୍କ ହାତରେ ଉତ୍ପାଦନର ଦାୟିତ୍ୱ ନ୍ୟସ୍ତ ରହିଥିବାରୁ ସେମାନେ ସଂଗଠିତ ହୋଇ ଦେଶର ଅର୍ଥନୀତିକୁ କାବୁ କରିନେବାକୁ ଚେଷ୍ଟା କରୁଛନ୍ତି । ଫଳରେ ଏହା ଏକ ନୂଆ ପ୍ରକାର ଶୋଷଣର ବାଟ ଫିଟାଉଛି ।

(୨୧) ଶିଳ୍ପର କେନ୍ଦ୍ରୀକରଣ ଫଳରେ ଲୋକସାଧାରଣଙ୍କ ସୃଜନଶକ୍ତିର ଯଥାଯଥ ବିକାଶସାଧନ ହୋଇପାରୁ ନାହିଁ । ଫଳରେ କଳକୁ ଚାହିଁ ରହିବା ବ୍ୟତୀତ ସେମାନଙ୍କର ଗତ୍ୟନ୍ତର ନାହିଁ । କିନ୍ତୁ ଯଦି ଯୁଦ୍ଧ ଲାଗେ, ଶତ୍ରୁପକ୍ଷ ବୋମା ପକାଇ ବୃହତ୍ ଶିଳ୍ପ ପ୍ରତିଷ୍ଠାନଗୁଡ଼ିକୁ ଭାଙ୍ଗିଚୁରି ଛାରଖାର କରିଦେବାକୁ ଚେଷ୍ଟା କରିବ । ଏହି କେନ୍ଦ୍ରୀକୃତ ଶିଳ୍ପପ୍ରତିଷ୍ଠାନଗୁଡ଼ିକ ଭାଙ୍ଗିଚୁରି ଗଲେ ଦେଶର ଅର୍ଥନୀତି କ୍ଷେତ୍ରରେ ଅଚଳ ଅବସ୍ଥା ସୃଷ୍ଟି ହେବ ଓ ଆମର ଆତ୍ମରକ୍ଷାଶକ୍ତି ଲୋପ ପାଇଯିବ । ଫଳରେ ଆମେ ଶତ୍ରୁପକ୍ଷର ସହଜ ଶିକାର ହୋଇପଡ଼ିବା । ଦ୍ୱିତୀୟ ମହାଯୁଦ୍ଧରେ ହିଟଲର ଏହି ନୀତି ଗ୍ରହଣ କରିଥିଲେ; କିନ୍ତୁ କୁଟୀରଶିଳ୍ପରେ ଏପରି କୌଣସି ଭୟ ନାହିଁ ।

(୨୨) ଜିନିଷପତ୍ର ଶୀଘ୍ର ନଷ୍ଟକରି ଦେବାପାଇଁ କଳ ଆମକୁ ପରୋକ୍ଷ ଭାବରେ ପ୍ରବର୍ତ୍ତାଏ; କାରଣ ଜିନିଷ ଯେତେ ଶୀଘ୍ର ନଷ୍ଟ ହେବ, ତାହା ସେତେ ଅଧିକ ବିକ୍ରୀ ହେବ । ଏହି ମନୋଭାବ ଆମେରିକା ଲୋକଙ୍କ ମଧ୍ୟରେ ଆଜି ଦେଖାଯାଉଛି ।

ଆମେରିକାରେ ଯେତେ ଜିନିଷ ଅକାରଣରେ ନଷ୍ଟ ହୁଏ, ସେଥିରେ ଭାରତ ଭଳି ଦେଶର ଅଭାବମୋଚନ ହୋଇପାରନ୍ତା; କିନ୍ତୁ କୁଟୀରଶିଳ୍ପୀ ତା'ର ଜିନିଷକୁ ଶ୍ରମସ୍ୱେଦର ବିନିମୟରେ ପାଉଥିବାରୁ ତାକୁ ମଜଭୁତ କରି ତିଆରି କରିବାକୁ ଚେଷ୍ଟା କରେ । ସେହିପରି ଯେ ନିଜେ କୌଣସି ଜିନିଷ ହାତରେ ତିଆରି କରେ, ତାକୁ ସେ ଶୀଘ୍ର ନଷ୍ଟ ହୋଇଯିବାକୁ କେବେହେଲେ ସୁବିଧା ଦିଏ ନାହିଁ; ସେ ଜିନିଷର ପୂରା ଉପଯୋଗ କରିବାକୁ ପ୍ରାଣପଣେ ଚେଷ୍ଟା କରେ । କାରଣ ଗୋଟିଏ ଜିନିଷ ତିଆରି କରିବାକୁ ହେଲେ କେତେ ଶ୍ରମସ୍ୱୀକାର କରିବାକୁ ପଡ଼େ, ତାହା ସେ ଅନ୍ତରେ ଅନ୍ତରେ ଅନୁଭବ କରିଛି; ତେଣୁ ମଣିଷର କାମ ପ୍ରତି ତା'ର ପ୍ରାଣରେ ସ୍ୱତଃ ସମ୍ମାନ ଜାଗିଉଠେ । କିନ୍ତୁ କଳଜାତ ଜିନିଷକୁ ଶୀଘ୍ର ନଷ୍ଟ କରିଦେବା ପାଇଁ ମଣିଷ ଅଜ୍ଞାତ ଭାବରେ ଚେଷ୍ଟା କରେ । ଏହାଦ୍ୱାରା ଜାତୀୟ ସମ୍ପଦର ଯଥାଯଥ ବିନିଯୋଗ ହୋଇପାରେ ନାହିଁ ।

(୨୩) କେନ୍ଦ୍ରୀକୃତ ଶିଳ୍ପର ଜାତୀୟକରଣ କରିବା ପୂର୍ବରୁ ଜାତୀୟ ସାଧୁତା ନିତାନ୍ତ ଆବଶ୍ୟକ । ଲୋକସାଧାରଣଙ୍କର ନାଗରିକତା ବୋଧ ନ ଆସିବା ପର୍ଯ୍ୟନ୍ତ ଏହା ସଫଳ ହେବ ନାହିଁ । ରୁଷ୍ ଦେଶର ଲୋକେ ଦେଶ-ସ୍ୱାର୍ଥପାଇଁ ବ୍ୟକ୍ତି-ସ୍ୱାର୍ଥକୁ ଜଳାଞ୍ଜଳି ଦେବାକୁ ତିଆରି ହୋଇ ରହିଥିବାରୁ ଶିଳ୍ପର ଏହି ଜାତୀୟକରଣ ବ୍ୟବସ୍ଥା ସେଠାରେ ସଫଳ ହୋଇଛି ।

କିନ୍ତୁ ଭାରତରେ ପରିସ୍ଥିତି ଭିନ୍ନ । ଏଠାରେ ଲୋକଙ୍କର ଜାତୀୟତାବୋଧ ଆଦୌ ଆସିନାହିଁ କହିଲେ ଚଳେ ଫଳରେ ଆମ ଦେଶ ସରକାର ଦେଶର ଯାନବାହନର

ଜାତୀୟକରଣ କରି ସଫଳ ହୋଇପାରୁ ନାହାନ୍ତି । ଏହାହିଁ ଲାଞ୍ଚମିଛ ଓ ପ୍ରିୟାପ୍ରୀତିତୋଷଣ ବଢ଼ୁଛି । ରେଲଓ୍ୱେର ଜାତୀୟକରଣ ହେବା ପରେ ଚୋରି, ଦୁର୍ଘଟଣା ପ୍ରଭୃତି ଅସମ୍ଭବ ଭାବରେ ବଢ଼ିଯାଇଛି; ତେଣୁ ଲୋକସାଧାରଣଙ୍କ ଶିକ୍ଷାର ସ୍ତର ଉନ୍ନତ ନ ହେଲେ ଶିଳ୍ପର କେବଳ ଜାତୀୟକରଣ କରିଦିଆଗଲେ ତାହା ଭ୍ରଷ୍ଟ ହେବ; କାରଣ "ସରକାରୀ ମାଲ୍, ଦରିଆମେ ଡାଲ୍"—ଏହି ଭାବ ଲୋକଙ୍କ ମଧ୍ୟରେ ଆଜି ପୂରାପୂରି କାମ କରୁଛି ।

ଏହିସବୁ ଦୃଷ୍ଟିକୋଣରୁ ବିଚାର କଲେ ଗାନ୍ଧିଜୀଙ୍କ ଶିଳ୍ପ-ନୀତିର ଗୁରୁତ୍ୱ ଆମେ ସ୍ପଷ୍ଟ ହୃଦୟଙ୍ଗମ କରିପାରୁ; ତେଣୁ ତାଙ୍କ ମତ ଅନୁସାରେ ଜୀବନଧାରଣର ମୌଳିକ ଆବଶ୍ୟକତା ପାଇଁ ଆମ୍ଭେମାନେ ପରମୁଖାପେକ୍ଷୀ ହେବା ଉଚିତ ନୁହେଁ । କାରଣ ଏହା ସମାଜରେ ଶୋଷଣର ପଥ ପରିଷ୍କାର କରୁଛି ଓ ଅସମୟରେ ମଧ୍ୟ ଆମ୍ଭମାନଙ୍କୁ ଦଗା ଦେଉଛି ।

ଯେଉଁ ଜିନିଷର ଉତ୍ପାଦନ କେବଳ ବୃହଦାକାର ଶିଳ୍ପ ଜରିଆରେ ସମ୍ଭବ, ସେ ସ୍ଥଳରେ ରାଷ୍ଟ୍ର ସେପରି ଶିଳ୍ପପ୍ରତିଷ୍ଠାନ ସବୁ ବସାଇ ପାରିବ । ବୃହଦାକାର ଶିଳ୍ପକ୍ଷେତ୍ରରେ ବ୍ୟକ୍ତିଗତ ପ୍ରଚେଷ୍ଟା ପୁରାପୁରି ରୋକ ଦିଆଯିବ । ଏହା ଫଳରେ ଯନ୍ତ୍ରଶିଳ୍ପ ଓ କୁଟୀରଶିଳ୍ପ ଦେଶର ସମୂହ ମଙ୍ଗଳ ପାଇଁ ହାତକୁ ହାତ ଧରି ଗତି କରିବେ ଓ ବାପୁଜୀଙ୍କ ଚିରବାଞ୍ଛିତ ଶ୍ରେଣୀ ଓ ଶୋଷଣହୀନ ସମାଜଗଠନ ସ୍ୱପ୍ନର ସମ୍ଭଳ ହୋଇ ଆଉ ରହିବ ନାହିଁ ।

# ଉତ୍ପାଦନ

ଭାରତରେ ଆଜିକାଲି ଉତ୍ପାଦନ-ବୃଦ୍ଧି ପାଇଁ ଭାରି ଚହଳ ପଡ଼ିଅଛି । ଦେଶର ଲୋକସଂଖ୍ୟା ଯେଉଁ ଅନୁପାତରେ ବୃଦ୍ଧି ପାଉଛି, ସେହି ଅନୁପାତରେ ଯଦି ଉତ୍ପାଦନ ବୃଦ୍ଧି ନ ପାଏ, ତା'ହେଲେ ଦେଶର ଆର୍ଥନୈତିକ ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିବ । ଏହି ସମସ୍ୟାର ସମାଧାନ ପାଇଁ ପ୍ରାଣମୂର୍ଚ୍ଛା ଜାତୀୟ ଉଦ୍ୟମ ହେବା ଦରକାର । ଏ ସମ୍ପର୍କରେ କେତୋଟି ବିଷୟ ଆମ୍ଭ ସମସ୍ତଙ୍କର ଅବଶ୍ୟ ବିଚାର୍ଯ୍ୟ ।

କଞ୍ଚାମାଲର ଉତ୍ପାଦନ ବୃଦ୍ଧିରେ ହିଁ ଜାତୀୟସମ୍ପଦର ବୃଦ୍ଧି ହେଲା ବୋଲି ବୁଝିବାକୁ ହେବ । କେବଳ କଳଦ୍ୱାରା ସଂସ୍କୃତ ପଦାର୍ଥର ଉତ୍ପାଦନ ବୃଦ୍ଧି କରିଦେଲେ ସେଥିରେ ଆନନ୍ଦିତ ହେବାର ବିଶେଷ କିଛି କାରଣ ନାହିଁ ; କାରଣ କଞ୍ଚାମାଲ ନ ମିଳିଲେ କଳକାରଖାନା ବା କୌଣସି ଶିଳ୍ପ-ବ୍ୟବସାୟ ଚାଲିପାରିବ ନାହିଁ । କଞ୍ଚାମାଲର ଉତ୍ପାଦନ ପ୍ରତି ଅଧିକ ଗୁରୁତ୍ୱ ଦେବାକୁ ହେବ । ଯେଉଁ କୃଷକ ନିଜର ଲହୁଲୁହ ବଦଳରେ ମାଟିର ବୁକୁ ଚିରି ସୁନାର ଫସଲ ଆଦାୟ କରେ, ତାକୁ ଜାତୀୟ ସମ୍ମାନ ଦିଆଯିବା ଆବଶ୍ୟକ; କିନ୍ତୁ ଆଜିକାଲି ନିରୀହ କୃଷକମାନଙ୍କ ଉପରେ କାହାରି ଆଖି ପଡ଼ୁନାହିଁ । ଶ୍ରମିକମାନେ ସହଜରେ ଏକଜୁଟ ହୋଇ ଧର୍ମଘଟ କରିପାରୁଥିବାରୁ ସମସ୍ତ ଦୁନିଆଁର ଦୃଷ୍ଟି ସେମାନଙ୍କ ପ୍ରତି ଆକୃଷ୍ଟ ହେଉଛି; କିନ୍ତୁ ଯେଉଁ କୃଷକ ଜାତିର ମୁହଁରେ ଆହାର ଦେଉଛି, ସେ ସମାଜରେ ଅତି ଅବହେଳିତ ଓ ଅସମ୍ମାନିତ ଅବସ୍ଥାରେ ରହିଛି । ଏହି ପ୍ରଥା ଶୀଘ୍ର ବଦଳିବା ଦରକାର ।

ଦେଶର ଖାଦ୍ୟଦ୍ରବ୍ୟ ବୃଦ୍ଧି କରିବାକୁ ହେଲେ କୃଷୀର ଅର୍ଥନୈତିକ ଅବସ୍ଥାକୁ ସ୍ୱଚ୍ଛଳ କରିବାକୁ ହେବ । ଜମିରେ ଯେପରି କୃଷୀର ଅଖଣ୍ଡ କ୍ଷମତା ରହେ, ସେପରି ବ୍ୟବସ୍ଥା କରାଯିବା ଉଚିତ । ବାସ୍ତବିକ ସମସ୍ତ ଭୂସମ୍ପତ୍ତିର ଜାତୀୟକରଣ କରା ନ ଗଲେ ଦେଶର ଖାଦ୍ୟାଭାବକୁ ଦୂର କରିବା ସମ୍ଭବ ହେବ ନାହିଁ ।

ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ତାହାର ଯଥାଯଥ ବିନିଯୋଗ କରିବାକୁ ହେବ । ଆଜି ମଧ୍ୟ ଲୋକଙ୍କ ମଧ୍ୟରେ ସରଳ ଜୀବନଯାପନ ପ୍ରତି ଆଗ୍ରହ ସୃଷ୍ଟି କରିବାକୁ ହେବ । ଜାତୀୟ ସମ୍ପଦର ସୁରକ୍ଷା ପାଇଁ ସମସ୍ତେ ମନୋଯୋଗୀ ହେବା ଉଚିତ । ବିଳାସବ୍ୟସନରେ ଯେପରି ଜାତୀୟ ସମ୍ପତ୍ତି ନଷ୍ଟ ନ ହୁଏ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯିବା ଆବଶ୍ୟକ ।

ଉତ୍ପାଦକ ଶ୍ରେଣୀର ଲୋକଙ୍କୁ ସରକାରଙ୍କ ତରଫରୁ ଅର୍ଥ, ବିହନ, ସାର, ଉପକରଣ ଆଦି ଅଭାବ ସମୟରେ ଯୋଗାଇ ଦିଆଯିବା ଦରକାର । କ୍ଷୁଦ୍ର ଜଳସେଚନ ଯୋଜନାମାନ କରାଯାଇ ଲୋକଙ୍କୁ ଅଭାବ ସମୟରେ ପାଣି ଯୋଗାଇ ଦିଆଯାଇ ପାରିଲେ ଦେଶର ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ଖାଦ୍ୟାଭାବ ଯେ ଅଳ୍ପକ୍ଷଣରେ ଦୂର ହୋଇପାରିବ, ଏଥିରେ କୌଣସି ସନ୍ଦେହ ନାହିଁ ।

ସବୁ ରକମର ଜାତୀୟବିକାଶର ମୂଳ ହେଲା ଶିକ୍ଷା; ତେଣୁ ଦେଶର ଶିକ୍ଷା ଜରିଆରେ ଉତ୍ପାଦନ ବୃଦ୍ଧି, ଖାଦ୍ୟ ସମସ୍ୟାର ସମାଧାନ, ଶରୀର ଶ୍ରମ ପ୍ରତି ସମ୍ମାନ, ଜାତୀୟ

ସମ୍ପଦର ସୁରକ୍ଷା ପ୍ରଭୃତି ଯେପରି ସମ୍ଭବ ହେବ, ସେପରି ବ୍ୟବସ୍ଥା କରାଯାଉ । ଆଉ ମଧ୍ୟ ଆଦର୍ଶ କୃଷି ଫାର୍ମମାନ ସ୍ଥାପନ କରି କୃଷକମାନଙ୍କୁ କୃଷି-ବିଜ୍ଞାନ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହେଉ । ସେମାନଙ୍କୁ ଦେଶର ସମ୍ପଦବୃଦ୍ଧିରେ ପୂରାପୂରି ଲଗାଇବା ଭଳି ବ୍ୟବସ୍ଥା ହେବା ସର୍ବାଦୌ ଆବଶ୍ୟକ ।

ଦେଶର ଉତ୍ପାଦନ ଏପରି ପ୍ରଣାଳୀରେ ହେବା ଉଚିତ, ଯେପରି ତାହାଦ୍ୱାରା ଧନର ସୁସମ ବଣ୍ଟନ ସମ୍ଭବ ହେବ, ଲୋକ-ସାଧାରଣଙ୍କ ଜୀବନଧାରଣର ମୌଳିକ ଆବଶ୍ୟକତା ମେଣ୍ଟି-ପାରିବ ଏବଂ ଉତ୍ପାଦକ ଶ୍ରେଣୀର ବ୍ୟକ୍ତିତ୍ୱ ବିକାଶ ହେବା ସଙ୍ଗେ ସଙ୍ଗେ ସମାଜରେ ଅର୍ଥନୈତିକ ସମତା ଓ ସନ୍ତୋଷ ସୃଷ୍ଟି ହୋଇପାରିବ । ଉତ୍ପାଦନର ଏହି କେତୋଟି ଦିଗ ପ୍ରତି ଦୃଷ୍ଟି ଦେଇ ଆମକୁ ଆମର ଜାତୀୟ ଅର୍ଥନୀତି ଗଢ଼ିବାକୁ ହେବ ।

କୃଷକମାନଙ୍କୁ ଉପ-ବ୍ୟବସାୟ ଯୋଗାଇ ଦେବା ପାଇଁ କୁଟୀରଶିଳ୍ପ ସାହାଯ୍ୟରେ ଜାତୀୟଉତ୍ପାଦନର ସୁବ୍ୟବସ୍ଥା ହେବା ଲୋଡ଼ା । ଦୁଇ ଶହ ବର୍ଷ ପୂର୍ବେ ପୃଥିବୀର ସବୁ ଦେଶରେ କୁଟୀରଶିଳ୍ପଦ୍ୱାରା ହିଁ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ହେଉଥିଲା । କେବଳ ୟୁରୋପର "ଶିଳ୍ପ-ବିପ୍ଳବ" ପରଠାରୁ ଯନ୍ତ୍ରଶିଳ୍ପର ଆରମ୍ଭ ହେଲା; ତେଣୁ କେନ୍ଦ୍ରୀକୃତ ଉତ୍ପାଦନବ୍ୟବସ୍ଥା ଏହି ଅଳ୍ପ ଦିନର କଥା । ଟାଣୁଆ ନୀତିଫଳରେ ଏହି ଅଳ୍ପଦିନିଆ କୃତ୍ରିମ ଅର୍ଥନୈତିକ ପରିସ୍ଥିତି ଯେ ଆପେ ଆପେ ଅପସରି ଯାଇପାରିବ, ଏଥିରେ ସନ୍ଦେହ ନାହିଁ ।

ଉତ୍ପାଦନ କର ବା ମର—ଏହା ହିଁ ଆମର ଜାତୀୟ ସଂକଳ୍ପ ହେବା ଉଚିତ । ଯେଉଁ ଲୋକର ଜାତୀୟ ଉତ୍ପାଦନ

ବୃଦ୍ଧିରେ କୌଣସି ହାତ ନାହିଁ, ତାକୁ ଭୋଗ କରିବାରେ ତାହାର କୌଣସି ହକ୍ ନାହିଁ—ଆମ୍ଭଙ୍କୁ ଏହି ମତ କଡାକଡି ଗ୍ରହଣ କରିବାକୁ ପଡ଼ିବ । ଗାନ୍ଧିଜୀ ସ୍ପଷ୍ଟ କହିଛନ୍ତି—"ଖାଦ୍ୟ ପାଇଁ କାମ କରିବା ସକାଶେ ଭଗବାନ ମଣିଷକୁ ସୃଷ୍ଟି କଲେ ଏବଂ କହିଲେ, ଯେଉଁମାନେ ପରିଶ୍ରମ ନ କରି ଖାଆନ୍ତି, ସେମାନେ ଚୋର ।" ତେଣୁ ରଜା ଜମିଦାରଙ୍କଠାରୁ ଆରମ୍ଭ କରି ଜଜ୍ ମାଜିଷ୍ଟ୍ରେଟଙ୍କ ପର୍ଯ୍ୟନ୍ତ ସମସ୍ତେ ଯେପରି ଯଥାଶକ୍ତି ଜାତୀୟ ଉତ୍ପାଦନବୃଦ୍ଧିରେ ଭାଗୀଦାର ହୁଅନ୍ତି, ସେପରି ବ୍ୟବସ୍ଥା କରିବାକୁ ହେବ । ପୋଲିସ ଓ ସୈନ୍ୟମାନଙ୍କୁ ସେମାନଙ୍କର ଅବସର ସମୟରେ ଉତ୍ପାଦନବୃଦ୍ଧିରେ ଖଟାଇବାକୁ ପଡ଼ିବ । କୁଟୀରଶିଳ୍ପ ଫଳରେ ଅନୁତ୍ପାଦକ ବ୍ୟବସାୟୀମାନେ ମଧ୍ୟ ବାଧ୍ୟ ହୋଇ ଦେଶର ଉତ୍ପାଦନବୃଦ୍ଧିରେ ସାହାଯ୍ୟ କରିବେ । ଏହିପରି ବ୍ୟାପକ ଉଦ୍ୟମ ନ ହେଲେ ଦେଶର ଏ ଆସନ୍ନ ଦୁର୍ଗତିରୁ ମୁକ୍ତି ମିଳିବା ଅସମ୍ଭବ ।

ଦେଶର ଉତ୍ପାଦନବୃଦ୍ଧି ସମ୍ପର୍କରେ ଆମ୍ଭମାନଙ୍କୁ ଅନ୍ୟ ଏକ କଥା ମନେ ରଖିବାକୁ ହେବ । କୌଣସି ଜିନିଷର ଯେପରି ଏକାଧିକ ବ୍ୟବହାର ହୋଇପାରେ, ସେଥିପ୍ରତି ଦୃଷ୍ଟିଦେବାକୁ ହେବ । ଉଦାହରଣ ସ୍ୱରୂପ ଜଙ୍ଗଲରୁ ବାଉଁଶ ନିଆଯାଇ କାଗଜ କଳରେ କାଗଜ ତିଆରି ହେଉଛି; କିନ୍ତୁ ଏହି ବାଉଁଶକୁ ଘର ତିଆରି ବାଡ଼ ମରାମତି ପ୍ରଭୃତି କାର୍ଯ୍ୟରେ ପ୍ରଥମେ ବ୍ୟବହାର କରି ପରେ ସେସବୁ କାଗଜ ପାଇଁ ସଂଗୃହୀତ ହୋଇ-ପାରିଲେ ଆମର ଦୁଇଟା ଉଦ୍ଦେଶ୍ୟ ଏକାବେଳକେ ସାଧିତ ହୁଅନ୍ତା । ଏବେ ଜଙ୍ଗଲର ସବୁ ବାଉଁଶ କାଗଜ ପାଇଁ ବ୍ୟୟ

ଯାଉଥିବାରୁ ଲୋକେ ଘର କରିବାକୁ ଖଣ୍ଡିଏ ପାଉନାହାନ୍ତି । ଏହାଦ୍ୱାରା ଜାତୀୟ ସମ୍ପଦର ଯଥାଯଥ ବିନିଯୋଗ ହୋଇ-ପାରୁ ନାହିଁ ବୋଲି ବୁଝିବାକୁ ହେବ ।

ସେହିପରି ଆମେ ଆଜିକାଲି ଢିଙ୍କିକୁଟା ଚାଉଳ ବଦଳରେ ସଫା ମିଲ୍‌ଚାଉଳ ଓ ଗୁଡ଼ ବଦଳରେ ଚିନି ବ୍ୟବହାର କରୁଛୁ; କିନ୍ତୁ ଏହାଦ୍ୱାରା ଜାତୀୟ ସମ୍ପଦର ହାନି ହେଉଛି ଓ ପ୍ରକୃତିର ଦାନ ପ୍ରତି ଅବମାନନା କରାଯାଉଛି; କାରଣ ଧାନକୁ କଳଦ୍ୱାରା ଚାଉଳ କରିବା ଓ ଗୁଡ଼କୁ ଚିନି କରିବା ଦ୍ୱାରା ସେସବୁର ଖାଦ୍ୟସାର ନଷ୍ଟ ହେଉଛି । ତେଣୁ ଯେତିକି ପରିମାଣ ଅଡ଼ିଆ ଚାଉଳ ଓ ଗୁଡ଼ ବ୍ୟବହାର କଲେ ଖାଦ୍ୟପ୍ରାଣ ଦୃଷ୍ଟିରୁ ଆମର ଚଳନ୍ତା, ମିଲ୍ ଚାଉଳ ଓ ଚିନି ବ୍ୟବହାର କରିବାଦ୍ୱାରା ଆମେ ସେସବୁର ପରିମାଣ ଦୃଷ୍ଟିରୁ ଅଧିକ ଖର୍ଚ୍ଚିବା । ବାସ୍ତବିକ୍ ଆଜିକାଲି ବିଜ୍ଞାନକୁ ସମୂହ କଲ୍ୟାଣ ପାଇଁ ବ୍ୟବହାର କରା ନ ଯାଇ ମଣିଷର ଧ୍ୱଂସସାଧନ ପାଇଁ ବ୍ୟବହାର କରାଯାଉଛି— ଏହି ରୀତି ଯଥାଶୀଘ୍ର ବଦଳିବା ଆବଶ୍ୟକ ।

ଆଜିକାଲି ଲାଭ ଦୃଷ୍ଟିରୁ ଜମିରେ ଅର୍ଥକରୀ ଫସଲ ଅଧିକ ପରିମାଣରେ ଚାଷ କରାଯାଉଛି । ଉତ୍କୃଷ୍ଟ ଧାନଜମିରେ ଧୂଆଁପତ୍ର ଓ ଝୋଟଚାଷ ହେଉଅଛି । ଫଳରେ ଖାଦ୍ୟଶସ୍ୟର ଉତ୍ପାଦନ କମୁଛି । ସେହିପରି ପୁଲଙ୍ଗତେଲ, କରଞ୍ଜତେଲ ପ୍ରଭୃତିରୁ ସୁନ୍ଦର ସାବୁନ ତିଆର ହୋଇପାରେ । ଏଥିପାଇଁ ନଡ଼ିଆତେଲ ବିଶେଷ ଭାବରେ ବ୍ୟବହାର କରାଯାଉଛି; ଅଥଚ ଲୋକେ ଉତ୍କୃଷ୍ଟ ଖାଦ୍ୟସାର ଥିବା ନଡ଼ିଆକୁ ଖାଇବା ପାଇଁ ପାଉ ନାହାନ୍ତି ।

ଏପରି ବ୍ୟବସ୍ଥା ନ ବଦଳିବା ଯାଏ ଦେଶରେ ଲାଗି ରହିଥିବା ଖାଦ୍ୟସଙ୍କଟରୁ ମୁକ୍ତିପାଇବା ସହଜ ନୁହେଁ ।

କେବଳ ଉତ୍ପାଦନ-ବୃଦ୍ଧିଦ୍ୱାରା ହିଁ ଦେଶର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଓ ସମ୍ପତ୍ତିସମ୍ପନ୍ନ ହୋଇଉଠିବ । ଏଥିପାଇଁ ପ୍ରାଣମୂର୍ଚ୍ଛା ଜାତୀୟ ଉଦ୍ୟମ ଲୋଡ଼ା । ବ୍ରିଟେନ୍‌ରେ ମାସକୁ ପାଞ୍ଚ ଶହ କୋଟି ଓ ଆମେରିକାରେ ଦିନକୁ ଚାରି ଶହ କୋଟି ଟଙ୍କା ରାଜସ୍ୱ ଆକାରରେ ମିଳୁଥିବା ସ୍ଥଳେ ଭାରତରେ ମୋଟେ ଚାରି ଶହ କୋଟି ବର୍ଷକୁ ଆୟ ହେଉଛି; ତେଣୁ ଅନ୍ୟାନ୍ୟ ଦେଶ ତୁଳନାରେ ଜାତୀୟ-ଉତ୍ପାଦନରେ ଆମ୍ଭେମାନେ କେତେ ପଛରେ ପଡ଼ିଥାଉଁ, ତାହା ବେଶ୍ ଜଣାପଡ଼େ ।

ବଡ଼ ଆନନ୍ଦର ବିଷୟ ଯେ ଉତ୍ପାଦନ-ବୃଦ୍ଧି ପାଇଁ ଭାରତ ସରକାର ଗୋଟିଏ ଜାତୀୟଯୋଜନା ତିଆରି କରିଛନ୍ତି । ଏହା ଏକ ଦୀର୍ଘ ମିଆଦି ପଞ୍ଚବାର୍ଷିକ ଯୋଜନା । ଏହି ଯୋଜନାଟି କାର୍ଯ୍ୟକାରୀ ହୋଇପାରିଲେ ୧୯୫୬ ମସିହା ଶେଷ ସମୟକୁ ଭାରତର ଜାତୀୟ ଆୟ ପ୍ରାୟ ଶତକଡ଼ା ଦଶ ଭାଗ ବୃଦ୍ଧି ପାଇ ପାରିବ ।

ଏହି ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ମୋଟ ୨୦୬୮ କୋଟି ୭୮ ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବାର ବ୍ୟବସ୍ଥା ହୋଇଛି । ସେଥିରୁ କୃଷି ଓ ଗ୍ରାମଗୋଷ୍ଠୀ ଯୋଜନା ପାଇଁ ୩୬୦ କୋଟି ୪୩ ଲକ୍ଷ ଟଙ୍କା, ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନ ପାଇଁ ୫୬୧ କୋଟି ୪୧ ଲକ୍ଷ ଟଙ୍କା, ଯନ୍ତ୍ରଶିଳ୍ପ ଓ କୁଟୀରଶିଳ୍ପର ଉନ୍ନତି ପାଇଁ

୧୭୩ କୋଟି ୪ ଲକ୍ଷ ଟଙ୍କା ବ୍ୟୟର ବରାଦ କରାଯାଇଛି । ଖାଦ୍ୟସଙ୍କଟର ସମାଧାନ ଦୃଷ୍ଟିରୁ ଜଳସେଚନ ଓ ଉତ୍ପାଦନ ବୃଦ୍ଧି ପାଇଁ ଅଧିକ ବ୍ୟୟର ବ୍ୟବସ୍ଥା କରି ଯୋଜନା କମିଶନ ବାସ୍ତବିକ୍ ଦୂରଦୃଷ୍ଟି ଓ ବିଜ୍ଞତାର ପରିଚୟ ଦେଇଛନ୍ତି ।

ଯୋଜନା କମିଶନ୍ ଗାନ୍ଧିଜୀଙ୍କ ଅନୁମୋଦିତ କେବଳ ଶିଳ୍ପର ବିକେନ୍ଦ୍ରୀକରଣ ଓ ଜାତୀୟକରଣ ନୀତିକୁ ପୂର୍ଣ୍ଣପ୍ରାୟ ଗ୍ରହଣ କରିନାହାନ୍ତି । ଏହି ଯୋଜନାରେ ମିଶ୍ର ଅର୍ଥନୀତି (Mixed Economy)ର ଆଶ୍ରୟଗ୍ରହଣ କରାଯାଇଛି । ତା' ଅର୍ଥ କେନ୍ଦ୍ରୀକୃତ ଶିଳ୍ପକ୍ଷେତ୍ରରେ ବ୍ୟକ୍ତିଗତ ଉଦ୍ୟମକୁ ମଧ୍ୟ ଉତ୍ସାହିତ କରାଯାଇଛି । ଦେଖାଯାଉ, ଭାରତର ପ୍ରଥମ ପଞ୍ଚବାର୍ଷିକ ଯୋଜନା ଜାତୀୟ-ଉତ୍ପାଦାନ ବୃଦ୍ଧି କରି ଦେଶର ଖାଦ୍ୟସଙ୍କଟ ଦୂର କରିବାରେ କେତେ ଦୂର ସମର୍ଥ ହୋଇପାରୁଛି !

ସାମାଜିକ ଅନ୍ୟାୟ, ଅର୍ଥନୈତିକ ଅସନ୍ତୋଷ, ଶ୍ରେଣୀଭେଦ ଓ ନୈତିକ ଅଧୋଗତି—ଏସବୁ ବ୍ୟକ୍ତିଗତ ଶିଳ୍ପବାଦ (Individual Industrialism)ର ଅବଶ୍ୟମ୍ଭାବୀ ପରିଣତି । ନିୟନ୍ତ୍ରଣହୀନ ଶିଳ୍ପବାଦ ହିଁ ଶୋଷଣର ଅର୍ଥ ଓ ସାମ୍ରାଜ୍ୟବାଦର ସାଥୀରୂପେ କାମ କରେ; ତେଣୁ କେବଳ ନିଜ ଦେଶର ଚାହିଦା ଭୁଲିଇବା ଭଳି ଉତ୍ପାଦନ କରିବାକୁ ହେବ ଓ ସେଥିରେ ସମସ୍ତ ପ୍ରକାର ରାଷ୍ଟ୍ରୀୟ କଟକଣା ପ୍ରୟୋଗ କରିବାକୁ ହେବ । ବାଣିଜ୍ୟ-ବ୍ୟବସାୟ ଓ ଲାଭ ଦୃଷ୍ଟିରୁ ଜାତୀୟ-ଉତ୍ପାଦନ କରା ନ ଯାଇ ଲୋକଙ୍କର ମୌଳିକ ଆବଶ୍ୟକତା ପୂରଣ ଦୃଷ୍ଟିରୁ ଏହା କରାଯିବା ଉଚିତ । ଏହା ଫଳରେ ଶିଳ୍ପକ୍ଷେତ୍ରରେ ଶୋଷଣ ଓ ସାମ୍ରାଜ୍ୟବାଦ ପାଇଁ ଆଉ ଅବକାଶ ରହିବ ନାହିଁ ।

# ସୁଷମ କୃଷି-ଯୋଜନା

କୃଷି ସହିତ ଭାରତୀୟ ସଭ୍ୟତା ଓ ସଂସ୍କୃତି ନିବିଡ଼ ଭାବରେ ଜଡ଼ିତ। ଆବହମାନ କାଳରୁ କୃଷି ଭାରତର ପ୍ରଧାନ ଶିଳ୍ପ ହୋଇ ରହିଅଛି । ଆଜିକାଲି ମଧ୍ୟ ଏଠାରେ ଶତକଡ଼ା ଅଶୀ ଭାଗ ଲୋକ ଜୀବନଧାରଣ ପାଇଁ ଏହି ଶିଳ୍ପର ଆଶ୍ରୟ ନିଅନ୍ତି; କିନ୍ତୁ ଦିନକୁଦିନ ଭାରତର ଲୋକସଂଖ୍ୟା ବୃଦ୍ଧି ପାଉଥିବାରୁ ଜମି ଉପରେ ଚାପ ବଢ଼ିବାରେ ଲାଗିଛି । ଫଳରେ ଜମିସବୁ ବହୁ ଖଣ୍ଡରେ ଭାଗ ଭାଗ ହେଉଛି । ଲୋକେ ଅନ୍ୟାନ୍ୟ ଧନ୍ଦା ଓ ବୃତ୍ତିର ସୁଯୋଗ ପାଉ ନ ଥିବାରୁ ବାଧ ହୋଇ ପୈତୃକ ଜମିଖଣ୍ଡକ କୌଣସିମତେ କାମୁଡ଼ି ପଡ଼ି ରହିଛନ୍ତି । ଏହି ଲକ୍ଷଣ ଦେଶ ପକ୍ଷରେ ଆଦୌ ଶୁଭସୂଚକ ନୁହେଁ । ଲୋକଙ୍କୁ ଅନ୍ୟାନ୍ୟ ଧନ୍ଦା ଶିକ୍ଷା ଦେଇ ଏହି ଅବସ୍ଥା ବଦଳାଇବାକୁ ହେବ ।

ଭାରତୀୟ କୃଷିର ଅନ୍ୟ ଏକ ବିଶେଷତ୍ୱ ଏହି ଯେ ଏଠାରେ ଏକର ପିଛା ଉତ୍ପାଦନ ପରିମାଣ ପୃଥିବୀ ମଧ୍ୟରେ ସବୁଠାରୁ କମ୍; କାରଣ ଭାରତୀୟ କୃଷକ କେବଳ ଗତାନୁଗତିକ ଭାବରେ ବାପଅଜାଙ୍କ ପଦାଙ୍କ ଅନୁସରଣ କରି କୃଷକାମ କରେ । ବୈଜ୍ଞାନିକ କୃଷିପ୍ରଣାଳୀ ପ୍ରୟୋଗ କରି କିପରି ଅଳ୍ପ ଜମିରୁ ଅଧିକ ଉତ୍ପାଦନ କରିବାକୁ ହେବ, ତାହା ସେ ଜାଣେନାହିଁ । ଆଜି ମଧ୍ୟ ଭାରତୀୟ କୃଷକର ଅର୍ଥନୈତିକ ଅବସ୍ଥା ଅତି ଶୋଚନୀୟ ; ତେଣୁ ଉନ୍ନତ ଧରଣର ଚାଷ ଓ ଅଧିକ ଉତ୍ପାଦନ ତା'ଠାରୁ ଆଶା କରିବା ବିଡ଼ମ୍ବନା ମାତ୍ର ।

ଭାରତ ପାଇଁ ଏକ ସୁଚିନ୍ତିତ କୃଷି-ଅର୍ଥନୀତି ଗଢ଼ିବାକୁ ହେଲେ ଆମ୍ଭମାନଙ୍କୁ ବହୁଳ କୃଷିପ୍ରଥା ଓ କୁଟୀରଶିଳ୍ପ ଉପରେ ସମସ୍ତ ଗୁରୁତ୍ୱ ଆରୋପ କରିବାକୁ ହେବ ଏବଂ ଦେଶରେ ବିଭିନ୍ନ ସ୍ୱାବଲମ୍ବୀ ଅଞ୍ଚଳ ଗଠନ କରି ଲୋକେ ସେମାନଙ୍କ ଆବଶ୍ୟକତାନୁସାରେ ଖାଦ୍ୟଦ୍ରବ୍ୟର ଉତ୍ପାଦନ କରି ପାରିଲା ଭଳି ଅନୁକୂଳ ବ୍ୟବସ୍ଥା ଗ୍ରହଣ କରିବାକୁ ହେବ । ଆଉ ମଧ୍ୟ କୁଟୀରଶିଳ୍ପର ବିକାଶସାଧନ କରି ଲୋକଙ୍କୁ ବିଭିନ୍ନ ଧନ୍ଦା ଓ ବୃତ୍ତି ବ୍ୟବସାୟର ସୁବିଧା ଯୋଗାଇ ଦିଆଯିବା ଉଚିତ । ଏହା ଫଳରେ ଜମି ଉପରେ ପଡ଼ୁଥିବା ଚାପ୍ ଅନେକ ପରିମାଣରେ କମିଯାଇ ପାରିବ ।

ଜମି ଉପରେ ରାଷ୍ଟ୍ରର ପୂର୍ଣ୍ଣ କ୍ଷମତା ସ୍ୱୀକୃତ ହେବା ଆବଶ୍ୟକ । ଏହା ଫଳରେ ଲୋକେ ଯେପରି ବ୍ୟକ୍ତିଗତ ଲାଭ ଦୃଷ୍ଟିରୁ ଚାଷ ନ କରି ଦେଶର ଖାଦ୍ୟସମସ୍ୟାର ସମାଧାନ ଦୃଷ୍ଟିରୁ ତାହା କରିପାରିବେ, ସେପରି ନିୟମ ପ୍ରଣୟନ କରାଯିବା ଉଚିତ । ଅର୍ଥକରୀ ଫସଲ କରିବାକୁ ହେଲେ ସରକାରୀ କର୍ତ୍ତୃପକ୍ଷଙ୍କ ଅନୁମତି ନିଆଯିବାର ବ୍ୟବସ୍ଥା ହେଉ । ଆଉ ମଧ୍ୟ ଦେଶର ସାରସୋତ ଜମିସବୁ ଆଖୁଚାଷରେ ନ ରହି ଯେପରି ତାଳ ଓ ଖଜୁରୀ ଗଛରୁ ଗୁଡ଼ ଆଦାୟ କରାଯାଇ ପାରିବ, ସେପରି ବ୍ୟବସ୍ଥା ହେଉ । ଏହା ଫଳରେ ଅନୁର୍ବର ବାଲିଜମିରେ ଖଜୁରୀ ଓ ତାଳଗଛ ଲଗାଯାଇ ଉର୍ବର ଜମିକୁ ଖାଦ୍ୟ ଉତ୍ପାଦନ ପାଇଁ ବ୍ୟବହାର କରାଯାଇ ପାରେ ।

ଖାଦ୍ୟଦ୍ରବ୍ୟରେ ଦେଶ ଆତ୍ମନିର୍ଭରଶୀଳତା ହାସଲ କରିବାକୁ ହେଲେ ସୁଚିନ୍ତିତ କୃଷିଯୋଜନା ଅନୁସାରେ ଉତ୍ପାଦନ

ବୃଦ୍ଧି କରାଯିବା ଉଚିତ । କୃଷକମାନେ ପେଟ ପୂରାଇବା ଦ୍ୱାରା ଲାଭ କରିବା ଦୃଷ୍ଟିରୁ ଚାଷ ନ କରି ଯେପରି ସୁସମ ଖାଦ୍ୟ ପାଇପାରିବେ, ସେହି ଅନୁସାରେ ସୁସମ କୃଷିବ୍ୟବସ୍ଥା ଦେଶରେ ଚାଲୁ ହେଉ । କେବଳ ଜମିରୁ ଶସ୍ୟ ଉତ୍ପାଦନ ନ କରି ଯେପରି ଫଳମୂଳ, ପନିପରିବା, ଡାଲି, ଶାଗ, ଗୁଡ଼, ନଡ଼ିଆ, ତେଲବୀଜ, କପା ପ୍ରଭୃତି ଦେଶର ଆବଶ୍ୟକତାନୁଯାୟୀ ଉତ୍ପାଦିତ ହୋଇପାରିବ, ସେପରି ବ୍ୟବସ୍ଥା କରାଯିବା ବର୍ତ୍ତମାନ ପରିସ୍ଥିତିରେ ଅତି ଜରୁରୀ । ସୁସମ ଖାଦ୍ୟଦୃଷ୍ଟିରୁ ସୁସମ କୃଷି-ଯୋଜନା କରାଯାଇ କାର୍ଯ୍ୟକାରୀ ହୋଇପାରିଲେ ଦେଶର ଖାଦ୍ୟସଙ୍କଟ ଦୂର ହୋଇପାରିବ ।

ଲୋକସଂଖ୍ୟା ଦୃଷ୍ଟିରୁ ପ୍ରତ୍ୟେକ ଭାରତୀୟର ଭାଗରେ ୬୫ ଡେସିମାଲ ଚାଷଜମି ପଡ଼ୁଛି । ପ୍ରଚଳିତ କୃଷିବ୍ୟବସ୍ଥା ଅନୁସାରେ ଏହି ଜମି ପରିମାଣ ଜଣକର ଚଳାଚଳ ଦୃଷ୍ଟିରୁ ନିତାନ୍ତ କମ୍; କିନ୍ତୁ ସୁସମ କୃଷିଯୋଜନା ଅନୁସାରେ ଉତ୍ପାଦନ ବ୍ୟବସ୍ଥା ହୋଇପାରିଲେ ଜଣକର ଆବଶ୍ୟକତା ଦୃଷ୍ଟିରୁ ଏହି ଜମି ପରିମାଣ ନିଅଣ୍ଟ ହେବ ନାହିଁ । ଏ ସମ୍ପର୍କରେ ସୁବିଖ୍ୟାତ ଗାନ୍ଧୀ-ଅର୍ଥନୀତିବିତ୍ ପ୍ରଫେସର କୁମାରପ୍ପା ଗୋଟିଏ ଯୋଜନା ପ୍ରସ୍ତୁତ କରିଛନ୍ତି । ତାଙ୍କ ଯୋଜନାନୁସାରେ ଜଣେ ଲୋକ ସୁସମ ଖାଦ୍ୟ ସକାଶେ ଦିନକୁ ୧୬ ଆଉନ୍ସ ବା ଅଠ ଛଟାଙ୍କି ଶସ୍ୟ ଲୋଡ଼ୁଥିବାରୁ ତା ଜମି ପରିମାଣର ଶତକଡ଼ା ୬୫.୧୨ ଭାଗ ଶସ୍ୟ ଉତ୍ପାଦନ ପାଇଁ ଲଗାଯିବା ଦରକାର । ସେହିପରି ଦିନକୁ ଏକ ଛଟାଙ୍କି ଡାଲିର ଆବଶ୍ୟକତା ଦୃଷ୍ଟିରୁ ଶତକଡ଼ା ଅ.୦ଭାଗ ଜମିରେ ମୁଗ, ବିରି, ହରଡ଼ ପ୍ରଭୃତି ରବିଫସଲ ଚାଷ

କରିବାକୁ ହେବ । ଖାଦ୍ୟରେ ଉପଯୁକ୍ତ ପରିମାଣ ତେଲ ପାଇବାକୁ ହେଲେ ଜମିର ଆଠଭାଗ ତେଲବୀଜ ଚାଷରେ ଲଗିବା ଉଚିତ । ସେହିପରି ଦୈନିକ ପନିପରିବା ୪ ଛଟାଙ୍କି ଦୃଷ୍ଟିରୁ ୨'୪ ଭାଗ ଜମିରେ ଶାକ୍‌ସବଜି ଚାଷ କରିବାକୁ ହେବ । ଏହା ବ୍ୟତୀତ ମୂଳ ଜାତୀୟ ପରିବା ୨ ଛଟାଙ୍କି ଓ ଫଳମୂଳ ୨ ଛଟାଙ୍କି ଦିନକୁ ଆବଶ୍ୟକ ହେଉଥିବାରୁ ଶତକଡ଼ା ୩ ଭାଗ ଜମି ସେ ସବୁର ଉତ୍ପାଦନ ପାଇଁ ଲଗାଯିବା ଆବଶ୍ୟକ । ବର୍ଷକୁ ମୁଣ୍ଡ ପିଛା ୨୫ ଗଜ ଲୁଗାର ଆବଶ୍ୟକତା ତୁଲାଇବା ପାଇଁ ୧୧.୪ ଭାଗ ଜମିରେ କପା ଚାଷ କରିବାକୁ ହେବ । ଦିନକୁ ଦୁଧ ଛ'ଛଟାଙ୍କି ଓ ଘିଅ ଏକତୋଳା ଖାଇବାକୁ ହେଲେ ଗାଈ ରଖି ଅନ୍ତତଃ କିଛି ଜମିରେ ଉତ୍କୃଷ୍ଟ ଧରଣର ଘାସ ଚାଷ କରିବାକୁ ହେବ । ଏହା ବ୍ୟତୀତ ଏପରି ଫସଲ କରିବାକୁ ହେବ ଯେଉଁଥିରୁ କି ଗାଈଗୋରୁଙ୍କ ପାଇଁ ଯଥେଷ୍ଟ ଖାଦ୍ୟ (fodder) ମିଳି ପାରୁଥିବ । ଆଉ ଆବଶ୍ୟକୀୟ ଗୁଡ଼ ପାଇବା ପାଇଁ କିଛି ଅନୁର୍ବର ଜମିରେ କେତେକ ତାଳ ଓ ଖଜୁରୀ ଗଛ ଲଗାଯାଇ ପାରେ । ଆଖୁ ଓ ଘାସ ପାଇଁ ଶତକଡ଼ା ଦୁଇ ଭାଗ ଜମି ଖଟାଇ ଦେଲେ ଉପଯୁକ୍ତ ଯତ୍ନ ନିଆଗଲେ ଆବଶ୍ୟକ ଗୁଡ଼ ଓ ଦୁଧ ମିଳିପାରିବ । ଏହା ଫଳରେ ୭୫ ଡେସିମାଲ ଜମିରେ ମଧ୍ୟ ଜଣେ ଲୋକ ସୁନ୍ଦର ଚଳିପାରିବ ବୋଲି ସେ ହିସାବ ଦର୍ଶାଇଛନ୍ତି । ଅନେକଙ୍କୁ ଏହି ଯୋଜନା ଅସମ୍ଭବ ବୋଧ ହୋଇପାରେ; କିନ୍ତୁ ଫ୍ରାନ୍‌ସ ଦେଶର ଲୋକେ ନିଜର ଆବଶ୍ୟକତା ଦୃଷ୍ଟିରୁ ଜମିରେ ବିଭିନ୍ନ ପ୍ରକାର ଫସଲ କରନ୍ତି । ତେଣୁ ଏହା ଭାରତରେ ଅସମ୍ଭବ ହେବ କାହିଁକି ? କିନ୍ତୁ ଏହି ସୁସମ କୃଷିଯୋଜନା ବ୍ୟକ୍ତିଗତ ଚାଷଦ୍ୱାରା ସେତେ

ଭଲ କାମ ଦେବନାହିଁ । ଏଥିପାଇଁ ଋଷ ଦେଶ ପରି କୋଠ-ଭୂଷି ବ୍ୟବସ୍ଥା କରାଯାଇ ପାରିଲେ ଦେଶର ଖାଦ୍ୟସମସ୍ୟାର ସହଜ ସମାଧାନ ସମ୍ଭବ ହେବ ।

କୃଷିର ବିକାଶ ପାଇଁ ସରକାର ଓ ଲୋକଙ୍କ ତରଫରୁ ମିଳିତ ଉଦ୍ୟମ ହେବା ଆବଶ୍ୟକ । ଉଭୟଙ୍କ ମଧ୍ୟରେ ପୂର୍ଣ୍ଣ ସହଯୋଗ ଓ ବିଶ୍ୱାସ ରହିଲେ ସବୁକାମ ସୁରୁଖୁରୁରେ ହୋଇ-ପାରିବ । କିନ୍ତୁ ଆଜି ଏହି ସହଯୋଗ ଅଭାବରୁ ସରକାରଙ୍କ କୌଣସି ଉନ୍ନତିକର ଯୋଜନା ପ୍ରାୟ କାର୍ଯ୍ୟକାରୀ ହୋଇପାରୁ ନାହିଁ । କ୍ଷୁଦ୍ର ଜଳସେଚନ ଯୋଜନା, ଖଣ୍ଡ ଖଣ୍ଡ ଜମିଗୁଡ଼ିକର ଏକତ୍ରିକରଣ, ଉନ୍ନତ ଧରଣର ବିହନ, ସାର ଓ କୃଷି-ଉପକରଣର ଯୋଗାଣ ଇତ୍ୟାଦି ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ହେଲେ ଲୋକମାନଙ୍କର ପୂର୍ଣ୍ଣପ୍ରାଣ ସମର୍ଥନ ଓ ସହଯୋଗ ଆବଶ୍ୟକ । ଆଉ ମଧ୍ୟ ସରକାର ସହଯୋଗୀ କୃଷି ଭଣ୍ଡାରମାନ ଖୋଲି ଚାଷୀମାନଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବାର ବ୍ୟବସ୍ଥା କରିବା ଉଚିତ । ଏହା ବ୍ୟତୀତ ରକ୍ଷଣଶୀଳ କୃଷକମାନଙ୍କୁ ସବୁଜ ସାର ଓ କମ୍ପୋଷ୍ଟ ସାର ତିଆରି କରିବା, ବୀଜ ସଂରକ୍ଷଣ, ଉନ୍ନତ ଚାଷ, ଅନିଷ୍ଟକର କୀଟପତଙ୍ଗମାନଙ୍କ କବଳରୁ ରକ୍ଷା ପାଇବାର ଉପାୟ ଇତ୍ୟାଦି ବୈଜ୍ଞାନିକ କୃଷି-ପ୍ରଣାଳୀ ବତାଇବାକୁ ହେଲେ ପ୍ରାୟ ପ୍ରତ୍ୟେକ ଗ୍ରାମରେ ଆଦର୍ଶ କୃଷିକ୍ଷେତ୍ରମାନ କରାଯିବା ଉଚିତ । ଲୋକେ ଆଖିରେ ବୈଜ୍ଞାନିକ ପ୍ରଣାଳୀର ଉପଯୋଗିତା ନ ଦେଖିବା ପର୍ଯ୍ୟନ୍ତ କେବଳ କଥାରେ କିଛି କରିବେ ନାହିଁ । ଏ ସମ୍ପର୍କରେ ଋଷ ଦେଶ ପରି ସହରମାନଙ୍କରେ ସରକାରୀ "କୃଷି-ଭବନ"ମାନ ଖୋଲାଗଲେ

ବୈଜ୍ଞାନିକ କୃଷିପ୍ରଣାଳୀ ସମ୍ବନ୍ଧରେ ଲୋକପ୍ରିୟ ହୋଇ ଉଠନ୍ତି। ଏହି କୃଷିଭବନରେ ଗାଁଗହଳରୁ ସହରକୁ ଆସୁଥିବା କୃଷକମାନଙ୍କ ପାଇଁ ରହିବାର ସୁବିଧା ଥିବା ଦରକାର। କୃଷି ସମ୍ପର୍କୀୟ ବିଭିନ୍ନ ପ୍ରଦର୍ଶନୀମାନ ସେଠାରେ କରାଯାଇ କୃଷକମାନଙ୍କୁ ସେସବୁ ବୁଝାଇ ଦିଆଯିବା ଉଚିତ। ଏହା କୃଷିର ବିକାଶରେ ଚମତ୍କାର ପ୍ରଭାବ ପକାଇପାରିବ ବୋଲି ବିଶ୍ୱାସ।

ଆମ ଦେଶରେ "ଚଷା ପିଲା"—ଏହି ଭାବ ଥିବା ପର୍ଯ୍ୟନ୍ତ କୃଷିର କୌଣସି ବାସ୍ତବ ବିକାଶ ହୋଇ ପାରିବ ନାହିଁ। ଲୋକମାନେ ଯେ ପର୍ଯ୍ୟନ୍ତ କୃଷିକାର୍ଯ୍ୟକୁ ଦେଶସେବା ଦୃଷ୍ଟିରୁ ଅତି ପବିତ୍ର ବୋଲି ବିଚାର ନ କରିଛନ୍ତି, ସେପର୍ଯ୍ୟନ୍ତ ଅଧିକ କିଛି ଆଶା କରିବା ଉଚିତ ହେବ ନାହିଁ। ଚୀନ ଦେଶର ଲୋକଙ୍କ ପରି ଆମ୍ଭେମାନେ ଜମିକୁ ପୂଜା କରିବାକୁ ଶିଖିଲେହିଁ ଆମ ଖାଦ୍ୟସମସ୍ୟାର ସମାଧାନ ହେବ। କୃଷିକାର୍ଯ୍ୟ ପ୍ରତି ଲୋକଙ୍କର ଥିବା ବିରାଗ ଓ ବିତୃଷ୍ଣା ଭାବକୁ ଦୂର କରିବାକୁ ହେଲେ ଶିକ୍ଷିତ ଓ ଧନିକ ଶ୍ରେଣୀ ଶରୀର ଶ୍ରମକୁ ସମ୍ମାନ ଦେଖାଇ ଶିଖିବା ଉଚିତ। ଆଜି ମଧ୍ୟ ଆମ ଶିକ୍ଷାପଦ୍ଧତିରେ କୃଷି ଓ ଧନ୍ଦା କାର୍ଯ୍ୟ ବାଧ୍ୟତାମୂଳକ ଭାବରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହେଉ। ଏହା ବ୍ୟତୀତ ବୈଜ୍ଞାନିକ କୃଷିପ୍ରଣାଳୀକୁ ଲୋକପ୍ରିୟ କରିବାକୁ ହେଲେ ସରକାରଙ୍କ ତରଫରୁ ପ୍ରୌଢ଼ଶିକ୍ଷା, ନୈଶ ବିଦ୍ୟାଳୟ, ପଠନ-ଗୃହ, ଭ୍ରମଣ-ବିଦ୍ୟାଳୟ, ଗ୍ରାମ-ବୈଠକ ଇତ୍ୟାଦିର ସୁବ୍ୟବସ୍ଥା କରାଯାଇ ନାଗରିକତା, ସାଧାରଣ ଲେଖାପଢ଼ା, କୃଷିବିଜ୍ଞାନାଦି ସେମାନଙ୍କୁ ଶିକ୍ଷା ଦିଆଯିବା ଉଚିତ। ରେଡ଼ିଓ ଓ ସିନେମା ପ୍ରଭୃତି ମଧ୍ୟ ଏ

ଦାଗରେ ଲୋକଙ୍କ ମଧ୍ୟରେ ଯଥେଷ୍ଟ ପ୍ରଭାବ ପକାଇ ପାରନ୍ତା । କିନ୍ତୁ ଦୁଃଖର ବିଷୟ, ଆମଦେଶରେ ସିନେମା ଲୋକ-କଲ୍ୟାଣକର ଉଦ୍ଦେଶ୍ୟରେ ବ୍ୟବହୃତ ହୋଇପାରୁ ନାହିଁ । ଏହା କେବଳ ସମାଜରେ ଉଲଗ୍ନ ଚିତ୍ର, କଦର୍ଯ୍ୟ ପ୍ରେମ ଓ ଚୋରର ଚକାପୂର୍ଣ୍ଣ ପ୍ରଭୃତି ଦୁଃସାହସିକ କାର୍ଯ୍ୟର ଚିତ୍ର ପରିବେଷଣ କରିବାରେ ବ୍ୟସ୍ତ । ଏହାଦ୍ୱାରା ସାଧାରଣ ମଣିଷର ମୁଣ୍ଡରେ ଜାଗଲା ପ୍ରେମ ପୂରାଇ ତାହାର ଚିନ୍ତା ଓ ବିବେଚନା-ଶକ୍ତିକୁ ଲୋପ କରି ଦିଆଯାଉଛି । ବାସ୍ତବିକ୍ ଲୋକଶିକ୍ଷା ଦୃଷ୍ଟିରୁ ସିନେମାର ଜାତୀୟକରଣ ହେବା ନିତାନ୍ତ ଆବଶ୍ୟକ ।

କୃଷିର ଉନ୍ନତି ପାଇଁ ଦେଶରେ ଭୂମିସଂସ୍କାର କରାଯିବା ଉଚିତ । ବ୍ୟକ୍ତିଗତ ଅଧିକାରରେ ଅତ୍ୟଧିକ କେତେ ଜମି ରଖାଯାଇ ପାରେ ତାର ପରିମାଣ ଲୋକସାଧାରଣଙ୍କ ଦ୍ୱାରା ନିର୍ଦ୍ଧାରିତ ହେଉ । ଆଉ ମଧ୍ୟ ଯେ କୃଷିକାର୍ଯ୍ୟ ସହିତ ସମ୍ପୃକ୍ତ ନୁହେଁ, ତାହାର ଜମିରେ କୌଣସି ରକମର ହକ୍ ରହିବା ଅନୁଚିତ । ଭୂମିହୀନ ଲୋକଙ୍କୁ ସଂଗଠିତ କରି ଦେଶର ଅନାବାଦ ଜମିରେ କୋଠଚାଷ କରାଗଲେ ଉତ୍ପାଦନ ବିଶେଷ ବୃଦ୍ଧି ପାଆନ୍ତା । କେତେକ ଲୋକ ରୁଷ ଓ ଆମେରିକା ପରି ଯନ୍ତ୍ରୀକରଣ ପ୍ରଣାଳୀରେ କୃଷିବାସ କରି ଦେଶର ଉତ୍ପାଦନ ବୃଦ୍ଧି କରିବା ପାଇଁ ମୁକ୍ତି ବାଢ଼ନ୍ତି । କିନ୍ତୁ କୃଷିର ଯନ୍ତ୍ରୀକରଣ ପ୍ରଣାଳୀ ଆମ ଦେଶ ପାଇଁ ଉପଯୁକ୍ତ ନୁହେଁ । ଆମେରିକାରେ ପୃଥିବୀର ଶତକରା ଛ'ଭାଗ ଲୋକଙ୍କ ପାଇଁ ପୃଥିବୀର ଏକ ପଞ୍ଚମାଂଶ ଚାଷ ଯୋଗ୍ୟ ଜମି ରହିଛି । ସେଦେଶରେ ମଧ୍ୟ ଜମିରୁ ବର୍ଷେ ଦୁଇ ବର୍ଷ ଫସଲ ଆଦାୟ କରିବା ପରେ ତାହାକୁ ଘାସଚାଷ

ପାଇଁ କଷ୍ଟ ଦନ ଗୁଡ଼ ଦଅନ୍ତ । କନ୍ତୁ ଆମଦେଶରେ ତାହା ଅସମ୍ଭବ । ରୁଷ ଦେଶର ଲୋକସଂଖ୍ୟା କମ ହୋଇଥିଲେ ମଧ୍ୟ ତାହା ପୃଥିବୀର ଏକ ପଞ୍ଚମାଂଶ କ୍ଷେତ୍ରଫଳ ଅଧିକାର କରିଅଛି । କନ୍ତୁ ଭାରତରେ ପୃଥିବୀର ଏକ ଷଷ୍ଠାଂଶ ଲୋକ ବାସ କରୁଥିଲେ ବି ଏଠାରେ ଜମିପରିମାଣ ଖୁବ୍ କମ୍ । ଉଦାହରଣ ସ୍ୱରୂପ ଭାରତରେ ଜଣପିଛା ହାରାହାରି କୃଷିଜମି ୦.୭ ଏକର ପଡ଼ୁଥିବା ସ୍ଥଳେ ଆମେରିକା ଓ ରୁଷିଆରେ ଯଥାକ୍ରମେ ୭.୪୩ ଓ ୪.୩୮ ଏକର ପଡ଼ୁଛି । ଏ ଦୃଷ୍ଟିରୁ ଆମ ଦେଶର ପରିସ୍ଥିତି ବିଚାର ନ କରି ଅନ୍ୟାନ୍ୟ ଦେଶକୁ ଅନ୍ଧ ଅନୁକରଣ କରିବା ସୁନ୍ଦର ନୁହେଁ । ପୁରୁଣାକାଳିଆ କୃଷି ଉପକରଣ ବଦଳରେ କେତେକ ଆଧୁନିକ ଯନ୍ତ୍ରପାତି ଅବଶ୍ୟ ବ୍ୟବହାର କରାଯାଇ ପାରେ । କନ୍ତୁ ଅନାବାଦି ପାହାଡ଼ିଆ ଜଙ୍ଗଲ ଜମି ବ୍ୟତୀତ ଭାରତରେ ଅନ୍ୟ ଜମିରେ କଳଲଙ୍ଗଳ ଆଦୌ କାମ ଦେବ ନାହିଁ । ଭାରତରେ କଳଲଙ୍ଗଳ ଗୁଡ଼ିକର ଅନେକ ଅସୁବିଧା ରହିଛି । ପ୍ରଥମତଃ ଭାରତରେ ବୃହଦାକାର କୃଷି ଫର୍ମମାନ ଦେଖିବାକୁ ପ୍ରାୟ ମିଳେନାହିଁ । ଆମେରିକା, ରୁଷିଆ ପ୍ରଭୃତି ଦେଶରେ କଳଚାଷ ସମ୍ଭବ ହେବାର କାରଣ ହେଉଛି ଯେ ସେଠାରେ ବହୁତ କୃଷୋପଯୋଗୀ ଜମି ପଡ଼ିଆ ପଡ଼ିଛି । ଅନ୍ତ କମ୍‌ରେ ଏକ ହଜାର ଫୁଟ୍ ଲମ୍ବର ଜମି ନ ହେଲେ ଟ୍ରାକ୍‌ଟର ବ୍ୟବହାର କରିବା ବ୍ୟୟସାଧ୍ୟ । ଛୋଟ ଛୋଟ ଜମିରେ ଟ୍ରାକ୍‌ଟର ଚଳିବା ଅସମ୍ଭବ । ଅବଶ୍ୟ ଭାରତରେ କୋଠଚାଷ ପ୍ରଥାର ପ୍ରଚଳନ ହୋଇପାରିଲେ ଏହି ଅସୁବିଧା ଅନେକ ପରିମାଣରେ ଦୂର ହୋଇପାରିବ । ଦ୍ୱିତୀୟତଃ ଭାରତରେ ଏକକାଳୀନ ପ୍ରଚୁର ବର୍ଷା ହେଉଥିବାରୁ

ଗଭୀର ଚାଷ ଦ୍ୱାରା ମାଟି ଧୋଇ ହୋଇ ଯିବାର ବିଶେଷ ଆଶଙ୍କା ରହିଛି । ୨୦।୩୦ ବର୍ଷ ପରେ ଆମେରିକାର ଜମିରୁ କଳଲଙ୍ଗଳ ଚାଷ ଦ୍ୱାରା ଭଲ ମାଟିସବୁ ଧୋଇ ହୋଇ ଚାଲିଯିବାର ଦେଖା-ଗଲାଣି । ତେଣୁ ସେଠାରେ ପ୍ରତିବର୍ଷ ନୂଆ ପଡ଼ିଆ ଜମିସବୁ ଚାଷ କରାଯାଏ । ତୃତୀୟତଃ କଳଲଙ୍ଗଳ ଚଳିବା ପାଇଁ ପେଟ୍ରୋଲ୍ ଦରକାର । କିନ୍ତୁ ଆମ ଦେଶରେ ପେଟ୍ରୋଲ୍‌ର ବିଶେଷ ଅଭାବ । ଅବଶ୍ୟ ସାଧାରଣ ଅବସ୍ଥାରେ ବ୍ରହ୍ମଦେଶ, ପାରସ୍ୟ ପ୍ରଭୃତି ଦେଶରୁ ପେଟ୍ରୋଲ୍ ଆଣି କଳଲଙ୍ଗଳ ଚଳାଯାଇପାରେ; କିନ୍ତୁ ଯୁଦ୍ଧ ବନ୍ଦ ହୋଇଗଲେ ବହିର୍ବାଣିଜ୍ୟ ବନ୍ଦ ହୋଇଯିବ ଓ ଫଳରେ ଆମ୍ଭମାନଙ୍କୁ ପେଟ୍ରୋଲ ମିଳିବ ନାହିଁ । ସେ ସମୟକୁ ବଳଦ, ମଣିଷ ପ୍ରଭୃତି ଅଯତ୍ନ ହେତୁ ମରିହଜି ଯାଇଥିବେ । କାରଣ କୃଷିର ଯନ୍ତ୍ରୀକରଣ କରାଗଲେ ଭାରବାହୀ ପଶୁଙ୍କୁ ଅକାରଣେ ଖୁଆଇ ପିଆଇ ରଖିବା ସମ୍ଭବ ହେବ ନାହିଁ । ଫଳରେ ଏହା ଆମ ପକ୍ଷରେ ଆତ୍ମହତ୍ୟା ହେବ । ଚତୁର୍ଥରେ ଆମ ଦେଶରେ ବହୁ ପରିମାଣରେ ଜଳଜମି ରହିଛି । ଜଳଜମିର ଚାଷ ପାଇଁ କଳଲଙ୍ଗଳ ଭଲ କାମ କରୁନାହିଁ । ପଞ୍ଚମରେ କଳଲଙ୍ଗଳର ଗଭୀର ଚାଷ ଦ୍ୱାରା ମାଟିରେ ଥିବା ଉପକାରୀ କୀଟପତଙ୍ଗ ମରିଯାଉଛନ୍ତି । ଫଳରେ କେତେ ଦିନ ପରେ ଜମି ଅନୁର୍ବର ହୋଇ ପଡ଼ିବାର ଦେଖା ଯାଉଛି । ଷଷ୍ଠରେ ଗଭୀର ଚାଷ ଦ୍ୱାରା ମାଟିର ଅତ୍ୟଧିକ ଆର୍ଦ୍ରତା ଯୋଗୁଁ ଫସଲ୍ ପଚିଯିବାର ଦେଖାଯାଉଛି । ସପ୍ତମରେ କଳଲଙ୍ଗଳ ପାଇଁ ଯନ୍ତ୍ରପାତି ଖରିଦ କରିବାକୁ ହେଲେ ଆମଦେଶରୁ ପ୍ରଚୁର ଧନ ବିଦେଶକୁ ଧୋଇ ହୋଇ ଚାଲିଯିବ । ଅଷ୍ଟମରେ କଳଲଙ୍ଗଳର ପ୍ରବର୍ତ୍ତନଦ୍ୱାରା ଭାରତ ଭଳି ଦେଶରେ ବେକାର-

ସମସ୍ୟା ଅତି ଉଗ୍ର ହୋଇ ଉଠିବ ଓ ଲୋକମାନେ କାମ ନ ପାଇ ଅଧିକ ଅଳସୁଆ ହେବେ । ଫଳରେ ଦେଶରେ ଅଶାନ୍ତି, ଅସନ୍ତୋଷ ଓ ଦୁର୍ନୀତି, ଦୁରାଚାର ବ୍ୟାପିଯିବ । ଆଳସ୍ୟ ପ୍ରଗତିର ପ୍ରଧାନ ଅନ୍ତରାୟ—ଏହା ସର୍ବବାଦି ସମ୍ମତ । ନବମରେ ଭାରତୀୟ ଜମି ଆବହମାନକାଳରୁ ଶୋଷିତ ହୋଇ ଆସୁଛି । ତେଣୁ କଳକାରଖାନା ସାହାଯ୍ୟରେ ତାକୁ ଯଦି ଅଧିକ ଶୋଷଣ କରିବାର ଚେଷ୍ଟା ହୁଏ, ତାହାହେଲେ ପରିଣାମ ବିଷମୟ ହେବ । କାରଣ ଜମିସବୁ ଅନୁର୍ବର ହୋଇ ପଡ଼ିବା ଦ୍ୱାରା ଦେଶସାରା ଦୁର୍ଭିକ୍ଷ ବ୍ୟାପିଯିବ । (୧୦)ରେ ଟ୍ରାକ୍ଟରର ଅଧିକ ବ୍ୟବହାର ଫଳରେ ବଳଦସଂଖ୍ୟା କମିଯିବ ଓ ଫଳରେ ଜମିରେ ଖତ ବ୍ୟବହାର କରିବା ପାଇଁ ଆମର ଗୋବର ଅଭାବ ହେବ । (୧୧) ରେ କଳପ୍ରକଳ୍ପଗୁଡ଼ିକ କୌଣସି କାରଣରୁ ବିଗିଡ଼ି ଗଲେ ତାକୁ ସଜାଡ଼ିବା ମଧ୍ୟ ସହଜ ନୁହେଁ । ଏସବୁ ଦୃଷ୍ଟିରୁ ବିଚାର କଲେ ଯନ୍ତ୍ରୀକରଣ ପ୍ରଣାଳୀ ଆମ ଦେଶର କୃଷି ପାଇଁ ଅନୁପଯୋଗୀ । ଆମଦେଶର ଅବସ୍ଥା ଯେପରି ସେଥିରେ କଳଲଙ୍ଗଳର ଗ୍ରହଣ ଆଦୌ ସୁବିଧାଜନକ ନୁହେଁ ।

ଆଉ ଗୋଟିଏ କଥା । ଆମ ଦେଶରେ କୃଷିବାସର ଉନ୍ନତି ସାଧନ କରିବାକୁ ହେଲେ ମୂଲିଆ, ଶ୍ରମିକ ଓ କୃଷୀର ମଜୁରିରେ ତାରତମ୍ୟ ରହିବା ଅନୁଚିତ । ବରଂ କୃଷୀକୁ ଅଧିକ ପରିଶ୍ରମ କରିବାକୁ ହେଉଥିବାରୁ ଏବଂ ଅଧିକ ଅନିଶ୍ଚିତ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ୁଥିବାରୁ ତାକୁ ଅଧିକ ପାରିଶ୍ରମିକ ବା ଆୟ ମିଳିବା ଉଚିତ । ଆଜିକାଲି ଅନେକ କୃଷୀ କୃଷିବାସ ଛାଡ଼ି ଅନ୍ୟତ୍ର ଦୈନିକ ମଜୁରିଆ ହେବାର କାରଣ ହେଲା ଯେ କୃଷିଦ୍ୱାରା

ଜୀବିକାର୍ଜନ ସମ୍ଭବ ହେଉନାହିଁ । ଏହି କାରଣରୁହିଁ କୃଷି ଆଜି ଅବହେଳିତ । ଅନେକ ଗୃହୀ କଳକାରଖାନା ଓ ବଡ଼-କାରଖାନାରେ କାମ କରିବାକୁ ପସନ୍ଦ କରୁଅଛନ୍ତି । କୃଷିକାର୍ଯ୍ୟ ଜୀବିକାର୍ଜନକ୍ଷମ ନ ହେବା ପର୍ଯ୍ୟନ୍ତ ଦେଶର ଉତ୍ପାଦନ ବୃଦ୍ଧି ପାଇବା ସମ୍ଭବ ନୁହେଁ ।

## କୃଷି-ଅର୍ଥନୀତି

ଶିଳ୍ପ ଓ କୃଷି ଉଭୟ କ୍ଷେତ୍ରରେ ଏକରକମର ଅର୍ଥନୈତିକ ନିୟମ ଲାଗୁ ହୁଏ ନାହିଁ । କୃଷି-ଅର୍ଥନୀତିର କେତେକ ପ୍ରଧାନ ବିଶେଷତ୍ୱ ରହିଛି; ଉଦାହରଣ ସ୍ୱରୂପ :—

(୧) କଳ ପରି ସମସ୍ତ କୃଷି-ଆମଦାନି-ଦ୍ରବ୍ୟ ବଜାରକୁ ଯାଏ ନାହିଁ । ନିଜେ ଉତ୍ପାଦନକାରୀ ଏହାର ଅଧିକାଂଶ ଭାଗ ନିଜ ଖର୍ଚ୍ଚରେ ଲଗାଏ ।

(୨) କୃଷିରେ ଯେତେ ଯେତେ ଅଧିକ ଖର୍ଚ୍ଚ କରାଯିବ, ଖର୍ଚ୍ଚ ଅନୁପାତରେ ଉତ୍ପନ୍ନଦ୍ରବ୍ୟ ବଢ଼ିବ ନାହିଁ । କିନ୍ତୁ ଶିଳ୍ପକ୍ଷେତ୍ରରେ ଖର୍ଚ୍ଚ ଓ ଶ୍ରମିକ ବଢ଼ିଲେ ହିଁ ଉତ୍ପାଦନ ବଢ଼େ । କାରଣ ମାଟି ଜୀବନ୍ତ ଓ କଳ ମୃତ—ଏହି ଦୃଷ୍ଟିକୋଣରୁ ଉଭୟ ବିଷୟ ବିଚାର କରିବାକୁ ହେବ ।

(୩) କଳକାରଖାନା ବଡ଼ ସୀମାବଦ୍ଧ ସ୍ଥାନରେ ହୁଏ ; କିନ୍ତୁ କୃଷିର କ୍ଷେତ୍ର ବିସ୍ତୃତ । ଫଳରେ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଜିନିଷପତ୍ର ନେବା ଆଣିବାର ସମସ୍ୟା କୃଷି-ଅର୍ଥନୀତି ଉପରେ ବିଶେଷ ପ୍ରଭାବ ପକାଏ । କିନ୍ତୁ କଳ କାରଖାନା

କେନ୍ଦ୍ରୀକୃତ ସ୍ଥାନମାନଙ୍କରେ ହେଉଥିବାରୁ ଜିନିଷପତ୍ର ନେବା ଆଣିବାରେ କୌଣସି ଅସୁବିଧା ହୁଏ ନାହିଁ ।

(୯) କୃଷିଜାତ ପଦାର୍ଥର ଦାମ୍ କମିଲେ ମଧ୍ୟ କୃଷିର ଉତ୍ପାଦନ ସେହି ଅନୁପାତରେ କମେ ନାହିଁ । କାରଣ ଶିଳ୍ପ ବ୍ୟବସାୟରେ ଉତ୍ପାଦନକାରୀ ନିଜର ଚାହିଦା ପାଇଁ ଉତ୍ପାଦନ କରେ ନାହିଁ । କିନ୍ତୁ କୃଷିରେ ଉତ୍ପାଦନକାରୀର ପ୍ରଧାନ ଉଦ୍ଦେଶ୍ୟ ହେଉଛି ନିଜର ଚାହିଦା ପୂରଣ କରିବା । ଶିଳ୍ପ ବ୍ୟବସାୟୀ ଲାଭ ଦୃଷ୍ଟିରୁ ଉତ୍ପାଦନ କରେ ; କିନ୍ତୁ କୃଷକ ନିଜର ଅଭାବ ମେଣ୍ଟାଇବା ପାଇଁ ଉତ୍ପାଦନ କରେ ।

(୫) କୃଷକ ରକ୍ଷଣଶୀଳ ; ସୁତରାଂ କୃଷିରେ କ୍ଷତି ହେଲେ ମଧ୍ୟ ସେ ଅନ୍ୟ ବ୍ୟବସାୟ ଧରେ ନାହିଁ; କିନ୍ତୁ କ୍ଷତି ହେଲେ ଶିଳ୍ପ ବ୍ୟବସାୟ ବନ୍ଦ ହୋଇଯାଏ ।

(୬) କୃଷିଜାତ ଜିନିଷର ଦାମ୍ କମିଲେ ତାହାର ଚାହିଦା ବଢ଼େ ନାହିଁ ବା ଦାମ୍ ବଢ଼ିଲେ ତାହାର ଚାହିଦା ପ୍ରାୟ ବିଶେଷ କମେନାହିଁ ।

(୭) ଅର୍ଥନୀତିକ ସ୍ୱଚ୍ଛଳତା ହେତୁ ମଧ୍ୟବିତ୍ତ ଓ ଉଚ୍ଚଶ୍ରେଣୀ-ମାନଙ୍କର ଆୟ ବଢ଼େ ; କିନ୍ତୁ ଏହାଦ୍ୱାରା ଗରିବ ଲୋକଙ୍କର ଆୟ ଯେଉଁ ସ୍ତରରେ ଥାଏ,ସାଧାରଣତଃ ସେହିସ୍ତରରେ ରହେ । ଉଦାହରଣ ସ୍ୱରୂପ ଜଣେ ଲୋକ ଯଦି ଭାତ, ଡାଲି, ତରକାରୀ, ଖାଉଛି, ତା'ର ଆୟ ବଢ଼ିଲେ ସେ ହୁଏତ ଅଧିକ କରି ଭଜା, ଖଟା ଖାଇବାକୁ ଚାହିଁବ; କିନ୍ତୁ ଖାଦ୍ୟବାବଦରେ ବିଶେଷ ଅଧିକ ଖର୍ଚ୍ଚ କରିବ ନାହିଁ । ତେଣୁ ତାର ଜମା ବଢ଼ିବ । କିନ୍ତୁ ଯେଉଁ ଗରିବ ଚାଷୀ ପଖାଳ ଲୁଣ ଖାଇ ଚଳେ, ତାହାର ଆୟ ବଢ଼ିଲେ

ସେ ବଳକା ଆୟର ବହୁ ଅଂଶ ଖାଦ୍ୟଦ୍ରବ୍ୟରେ ଖର୍ଚ୍ଚ କରିବ। ଫଳରେ ଶିଳ୍ପପତି ପରି ତାର ଜମା ବଢ଼ିବ ନାହିଁ।

(୮) ସୁତରାଂ ଧନର ଯେତେ ସୁସମ ବଣ୍ଟନ ସମ୍ଭବ ହେବ —ଖାଦ୍ୟପଦାର୍ଥର ଚାହିଦା ସେତେ ବଢ଼ିବ।

(୯) କୃଷିଜାତ ଦ୍ରବ୍ୟର ଉତ୍ପାଦନ ଯେତେ ବଢ଼ିବ, ତାହାର ଦାମ୍ ସେହି ଅନୁପାତରେ ବଢ଼ିବାର କଥା; କାରଣ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବାକୁ ହେଲେ କୃଷକକୁ ଅଧିକ ଖର୍ଚ୍ଚ ଓ ମିହନତ କରିବାକୁ ପଡ଼େ। କିନ୍ତୁ ଶିଳ୍ପକ୍ଷେତ୍ରରେ ବହୁ ଉତ୍ପାଦନ ଫଳରେ ଉତ୍ପାଦନର ଆନୁପାତିକ ଖର୍ଚ୍ଚ କମ୍ ହୁଏ। ଏହି ଦୁଇ ପରସ୍ପର ବିରୋଧୀ ନିୟମର ସଂଘର୍ଷ ଫଳରେ କୃଷିଜାତ ଦ୍ରବ୍ୟର ମୂଲ୍ୟ ଯେଉଁ ହାରରେ ବଢ଼ିବାର କଥା, ସେପରି ବଢ଼ିପାରେ ନାହିଁ।

(୧୦) ଜିନିଷର ଦାମ୍ ବଢ଼ାଇବା ବିକ୍ରେତାର ଶକ୍ତି ଉପରେ ନିର୍ଭର କରେ; ଅର୍ଥାତ୍ ବିକବା ଲୋକର ଯଦି ଜିନିଷକୁ ବିକ୍ରୀ ନ କରି ସଞ୍ଚିତ କରି ରଖିବାର ଶକ୍ତି ଥାଏ—ତା' ହେଲେ ସେ ନିଜର ସୁବିଧା ଅନୁସାରେ ତାକୁ ଚଡ଼ା ଦରରେ ବିକିପାରିବ; କିନ୍ତୁ ଗରିବ ଚାଷୀର ସେ ଶକ୍ତି ନ ଥାଏ।

(୧୧) କୃଷିଜାତ ଦ୍ରବ୍ୟ ସାଧାରଣତଃ କ୍ଷୟଶୀଳ; ତେଣୁ ସେସବୁ କିଛି ଦିନ ପର୍ଯ୍ୟନ୍ତ ଜମାକରି ରଖିବାର ସୁବିଧା ନ ଥାଏ।

(୧୨) ମଫସଲର ଗରିବ କୃଷକ ସହରବାସୀ ଶିଳ୍ପପତି-ଦ୍ୱାରା ଶୋଷିତ ହୁଏ। କାରଣ ମଫସଲର କଞ୍ଚାମାଲ ସହରରେ ବିକ୍ରୀ ହେଲା ବେଳେ ସହରବାସୀ ତା'ର ଦାମ୍ ନିରୂପଣ କରେ। କିନ୍ତୁ ସେହି କଞ୍ଚାମାଲରୁ ପ୍ରସ୍ତୁତ ହେଉଥିବା ସମ୍ପୂର୍ଣ୍ଣ ପଦାର୍ଥର

ମୂଲ୍ୟ ପୂର୍ବରୁ ଧାର୍ଯ୍ୟ ହୋଇ ମଫସଲମାନଙ୍କରେ ଯାଇ ବଣ୍ଟା ହୁଏ । ଗରିବ ଚାଷୀ ବିଚାରା ଏଥିର କୌଣସି ପ୍ରତିବାଦ କରିପାରେ ନାହିଁ । କୃଷିଜାତ ଦ୍ରବ୍ୟର ମୂଲ୍ୟ ବାସ୍ତବିକ୍ ସରକାରଙ୍କ ଦ୍ୱାରା ଧାର୍ଯ୍ୟ ହେବା ଆବଶ୍ୟକ ।

(୧୩) ଆଉ ମଧ୍ୟ ଗାଁଗହଳର କୃଷକମାନେ ଅଭାବରେ ପଡ଼ି ଉତ୍ପାଦନ ପୂର୍ବରୁ ଅପେକ୍ଷାକୃତ ଶସ୍ତା ମୂଲ୍ୟରେ ତାକୁ ବଣ୍ଟା କରିବେ ବୋଲି ଶିଳ୍ପବ୍ୟବସାୟୀଙ୍କ ସହିତ ଚୁକ୍ତି କରନ୍ତି । ତେଣୁ ଉତ୍ପାଦନ ବୃଦ୍ଧି ଅନୁସାରେ କୃଷକର ଲାଭ ହୁଏ ନାହିଁ ।

(୧୪) ଚାଷୋପଯୋଗୀ ଜମି ବରାବର ଭାଗ ଭାଗ ହେଉଥାଏ । କିନ୍ତୁ କଳକାରଖାନାରେ ଯେଉଁମାନେ କାମ କରନ୍ତି, ସେ କାମ ସେମାନଙ୍କର ପୈତୃକ ଅଧିକାର ନୁହେଁ । ଶ୍ରମିକ ତାହାର ବାପ କରୁଥିବା କାମରେ ନିଯୁକ୍ତ ହେବାର କୌଣସି ଅଧିକାର ପାଏନାହିଁ । କିନ୍ତୁ ଯେଉଁ ଲୋକ ଜମି ଚଷୁଥିବ, ତାହାର ଉତ୍ତରାଧିକାରୀଙ୍କ ସଂଖ୍ୟା ଯେତେ ବଢ଼ିବ, ଜମି ସେତେ ଭାଗରେ ଖଣ୍ଡିତ ହେବ । ଜମି ସେମାନଙ୍କ ଜୀବନଧାରଣ ପାଇଁ ଯଥେଷ୍ଟ ନ ହେଲେ ମଧ୍ୟ ସେମାନେ ଅନନ୍ୟୋପାୟ ହୋଇ ସେହି ଜମି ଉପରେ ନିର୍ଭର କରନ୍ତି । ଏହା ଫଳରେ ଚାଷକାମ ଜୀବିକାର୍ଜ୍ଜନକ୍ଷମ ହୋଇପାରେ ନାହିଁ ; ତେଣୁ ଲୋକେ ବାଧ୍ୟ ହୋଇ ଜମି ବାଡ଼ିକୁ ବିକ ଭାଙ୍ଗି ଦେଇ କ୍ଷେତ ମଜୁରିଆ ଓ ଶିଳ୍ପଶ୍ରମିକ ହୋଇ ଯାଆନ୍ତି । ଏହାର ପରିଣତି ସ୍ୱରୂପ ଦେଶର ଅଧିକ ସଂଖ୍ୟକ ଲୋକ ଭୂମିହୀନ ହେବା ସଙ୍ଗେ ସଙ୍ଗେ କେତେକ ମୁଷ୍ଟିମେୟ ଲୋକ ଜମିଦାର ହୋଇ ଉଠନ୍ତି ।

(୧୫) ଗାଁଗହଳର ଚାଷୀ ସାମାଜିକ ଶୃଙ୍ଖଳା ନାମରେ ଦିନକୁ ଦିନ ଅଧିକ ନିଃସ୍ୱ ନିରନ୍ନ ହୋଇ ଉଠୁଛି । ବାହା, ବ୍ରତ

ଆଉ ସାମାଜିକ ବିଧିବିଧାନ ଯଥାରୀତି ପାଳନ କରିବାକୁ ହେଲେ ତାହାର ଜୀବନଧାରଣର ଏକମାତ୍ର ସମ୍ବଳ ଜମି ଓ ହଳହଣ୍ଡା ତାକୁ ବାଧ୍ୟ ହୋଇ ମୁରୁଛିବାକୁ ପଡ଼ୁଛି । ଫଳରେ ସେ ଦିନକୁ ଦିନ ଦାଣ୍ଡର ଭିକାରୀ ହେଉଛି । ଏହି ସାମାଜିକ ବିଧାନରେ ପରିବର୍ତ୍ତନ ହେବା ଦରକାର । ମୋଟ୍ ଉପରେ ଦେଶର ବର୍ତ୍ତମାନ ଅବସ୍ଥାରେ ଗରିବ କୃଷକ ସଂଗଠିତ ନ ହେଲେ ସେ ବିଚାରା ଚୂପି ହୋଇ ଶେଷ ପାଇଯିବ ।

(୧୬) କୃଷିକ୍ଷେତ୍ରରେ ବ୍ୟବସାୟୀ ଅର୍ଥନୀତି ବଡ଼ ମାରାତ୍ମକ । ଶିଳ୍ପ ପରି କୃଷିକୁ ଲାଭଦୃଷ୍ଟିରୁ ବିଚାରକଲେ ଆଦୌ ଚଳିବ ନାହିଁ । ଯେଉଁଥିରେ ଜୀବନମରଣର ସମସ୍ୟା ନିହିତ, ସେଥିରେ ଲାଭାଲାଭର ବିଚାର କେଉଁଠୁ ଆସିବ ? କୃଷିକାର୍ଯ୍ୟ ଲାଭଜନକ ନ ହେଲେ ତାକୁ ବାଦ୍ ଦିଆଯାଇ ନ ପାରେ । ମୋଟ୍ ଉପରେ ଧନୀ ହେବାର ଅର୍ଥନୀତି କୃଷି-ଅର୍ଥନୀତି ସହିତ ଖାପ ଖାଇବ ନାହିଁ ।

(୧୭) ପୂର୍ବେ ସହରର ଶିଳ୍ପ ଶ୍ରମିକମାନେ ପୁରପଲ୍ଲୀର କୃଷକମାନଙ୍କ ଉପରେ ଜୀବନ ଧାରଣ ପାଇଁ ନିର୍ଭର କରୁଥିଲେ । କିନ୍ତୁ ସେହି ଅର୍ଥନୈତିକ ବ୍ୟବସ୍ଥା ଏବେ ଓଲଟ ପାଲଟ ହୋଇଯାଇଛି । ଆଜିକାଲି ମଫସଲ କଞ୍ଚାମାଲ ଉତ୍ପାଦନ କରୁଥିଲେ ମଧ୍ୟ ସଂସ୍କୃତ ପଦାର୍ଥ ପାଇଁ ବାଧ୍ୟ ହୋଇ ସହର ଉପରେ ନିର୍ଭର କରୁଛି । କାରଣ ଗାଁ ଗହଳରେ କୁଟୀରଶିଳ୍ପ ଆଉ ପ୍ରାୟ ନାହିଁ ଓ ଫଳରେ ମଫସଲର କଞ୍ଚାମାଲ ସହରର କଳ କାରଖାନାରେ ସଂସ୍କୃତ ପଦାର୍ଥରେ ପରିଣତ ହେଉଛି । ଆଜିକାଲି ମଫସଲର ଜୀବନ ବାସ୍ତବିକ ସହର ହାତରେ ବନ୍ଧା ।

# ଆମ ଖାଦ୍ୟସମସ୍ୟା

ଅଖଣ୍ଡ ଭାରତ ପାକସ୍ଥାନ ଓ ଭାରତ ମଧ୍ୟରେ ଭାଗ ଭାଗ ହେବା ଦିନଠାରୁ ଭାରତରେ ଅତି ଉତ୍କଟ ଖାଦ୍ୟାଭାବ ଦେଖା-ଦେଇଛି । ପାକସ୍ଥାନସୃଷ୍ଟି, ଲୋକସଂଖ୍ୟାବୃଦ୍ଧି, ବର୍ଷାର ଅନିୟମିତତା, ଉତ୍ପାଦନହ୍ରାସ ଇତ୍ୟାଦି ପ୍ରଧାନ କାରଣ ହେତୁ ଖାଦ୍ୟସମସ୍ୟା ଦେଶର ଅର୍ଥନୀତିରେ ସଙ୍କଟ ସୃଷ୍ଟି କରିଛି । ଏହି ସଙ୍କଟରୁ ମୁକ୍ତିଲାଭ କରିବାକୁ ହେଲେ ସରକାର ଓ ଜନ-ସାଧାରଣଙ୍କର ମନପ୍ରାଣ ଢଳା ଉଦ୍ୟମ ଆବଶ୍ୟକ ।

ପାକସ୍ଥାନ ସୃଷ୍ଟି ଫଳରେ ଜଳସେଚନର ସୁବିଧା ଥିବା ଅତି ସାରବାନ ଜମିସବୁ ଭାରତ ଦେହରୁ ବିଚ୍ଛିନ୍ନ ହୋଇଗଲା । ଉଦାହରଣ ସ୍ୱରୂପ ପୂର୍ବ-ବଙ୍ଗ, ପଶ୍ଚିମ-ପଞ୍ଜାବ ଓ ଭାରତର "ଶସ୍ୟଗୋଲା" ନାମରେ ଖ୍ୟାତ ସିନ୍ଧୁ ପ୍ରଦେଶ ପାକସ୍ଥାନ ଭାଗରେ ପଡ଼ିଲା । ଅଖଣ୍ଡ ଭାରତର ରାଜସ୍ୱରୁ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇ ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ଜଳସେଚନର ସୁନ୍ଦର ବ୍ୟବସ୍ଥା କରାଯାଇଥିଲା; କିନ୍ତୁ ଭାରତର ଗରିବ ଲୋକେ ସେସବୁ ସୁବିଧାର ଉପଯୋଗ କରିପାରିଲେ ନାହିଁ । ଉଦାହରଣ ସ୍ୱରୂପ ଭାରତରେ ୨୪୯୪ ଲକ୍ଷ ଏକର କୃଷିଜମି ମଧ୍ୟରୁ ମୋଟେ ୬୮୯ ଲକ୍ଷ ଏକର ଜମିରେ ଜଳସେଚନର ସୁବିଧା କରାଯାଇଛି; କିନ୍ତୁ ପାକସ୍ଥାନର ୮୫୦ ଲକ୍ଷ ଏକର କୃଷିଜମି ମଧ୍ୟରୁ ୩୦୦ ଲକ୍ଷ ଏକର ଜମିରେ ଜଳସେଚନର ସୁବିଧା ରହିଛି । ଏହା ବାଦ ପାକସ୍ଥାନର ହିନ୍ଦୁବିରୋଧୀ କାର୍ଯ୍ୟ ଫଳରେ ଲକ୍ଷ ଲକ୍ଷ ଆଶ୍ରୟପ୍ରାର୍ଥୀ ଭିକ୍ଷାଥାଳ ଧରି ଭାରତର ଦୁଆରେ ହାତ-

ମାରଲେ । ସେମାନଙ୍କ ଥଇଥାନ ଓ ସୁବିଧା ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରିବାକୁ ପଡ଼ୁଛି । ମୁଖ୍ୟତଃ ଏହି ପାକିସ୍ଥାନ ସୃଷ୍ଟି ହିଁ ଭାରତର ଅର୍ଥନୀତି-କ୍ଷେତ୍ରରେ ଅଚଳ ଅବସ୍ଥା ସୃଷ୍ଟି କରିଅଛି ।

ଖାଦ୍ୟଦ୍ରବ୍ୟ ସଂଗ୍ରହ କରିବାରେ ଆମ ଦେଶରୁ ବର୍ତ୍ତମାନ ପ୍ରାୟ ୧୫୦ କୋଟି ଟଙ୍କା ବିଦେଶକୁ ବୋହି ହୋଇ ଗୁଲି ଯାଉଅଛି । ଖାଦ୍ୟଜିନିଷର ଅଭାବ ଫଳରେ ଆମ୍ଭେମାନେ ବାଧ୍ୟହୋଇ ମହଙ୍ଗା ଦରରେ ସେସବୁ ବିଦେଶରୁ କିଣୁଅଛୁ । ଫଳରେ ଦେଶରେ ଅର୍ଥନୈତିକ ସଙ୍କଟ ଦେଖାଦେଇଛି ଓ ଭିନ୍ନ ଜାତିଗଠନ କାର୍ଯ୍ୟସବୁ ପଛେଇ ଯାଇଅଛି ।

ପାକିସ୍ଥାନ-ସୃଷ୍ଟି ଫଳରେ ଆମ ଦେଶରେ ଅଖଣ୍ଡ ଭାରତର ଶତକଡ଼ା ୭୭.୨ ଭାଗ ଲୋକ ରହୁଥିବା ସ୍ଥଳେ ଆମ ଭାଗରେ ମୋଟ ଜମିପରିମାଣର ଶତକଡ଼ା ୭୩.୧ ଭାଗ ମୋଟେ ପଡ଼ିଅଛି । ସେଥିରୁ ଧାନଜମି ୭୨.୫% ଓ ଗହମ ଜମି ୭୦% । ଏହା ବ୍ୟତୀତ ଉତ୍କୃଷ୍ଟ କପା ଓ ଝୋଟ ଜମିସବୁ ପାକିସ୍ଥାନରେ ରହିଅଛି । ଏହାଦ୍ୱାରା ଆମର ପ୍ରାୟ ସାଢ଼େ ସାତ ଲକ୍ଷ ଟନ୍ ଖାଦ୍ୟଶସ୍ୟ ବର୍ଷକୁ ବର୍ଷ ଅଭାବ ପଡ଼ୁଅଛି ।

ଭାରତର ଖାଦ୍ୟସଙ୍କଟ ଦୂରକରିବା ପାଇଁ ଆମ ଜାତୀୟ ସରକାର ଗୋଟିଏ ପାଞ୍ଚବର୍ଷିଆ ଯୋଜନା କରୁଅଛନ୍ତି; ସେଥିରେ ସତୁରି ଲକ୍ଷ ଏକର ପଡ଼ିଆଜମିକୁ ଉଠିଆ କରିବାର ବ୍ୟବସ୍ଥା ହୋଇଛି । ସେହିପରି ବର୍ତ୍ତମାନର କ୍ଷୀର-ଉତ୍ପାଦନ ପରିମାଣର ଶତକଡ଼ା ଦଶଭାଗ ବୃଦ୍ଧି କରିବା ପାଇଁ ଚେଷ୍ଟା ହେଉଅଛି । ଆଉ

ମଧ୍ୟ ସମୁଦ୍ରରୁ ପ୍ରତିଦିନ ଦଶ ହଜାର ଟନ୍ ଅଧିକ ମାଛ ଧରିବାର ଯୋଜନା କରାଯାଇଛି ।

ଭାରତରେ ଭୟଙ୍କର ଲୋକସଂଖ୍ୟାବୃଦ୍ଧି ଏହି ଖାଦ୍ୟ-ସଙ୍କଟକୁ ଉତ୍କଟ କରିବାରେ ସାହାଯ୍ୟ କରୁଅଛି । ପ୍ରତିବର୍ଷ ଭାରତ-ଲୋକସଂଖ୍ୟାର ଏକଭାଗ ବୃଦ୍ଧି ପାଉଅଛି; ଅର୍ଥାତ୍ ପ୍ରତିବର୍ଷ ୫ଲକ୍ଷ ନୂଆ ଲୋକଙ୍କୁ ଖାଦ୍ୟ ଯୋଗାଇବା ଅପରିହାର୍ଯ୍ୟ ହୋଇ ଉଠୁଅଛି । ଏହାର ନିବାରଣ ପାଇଁ ଅଧିକ ସନ୍ତାନର ବାପ ସମାଜରେ ନିନ୍ଦିତ ହେବା ଉଚିତ । ଆଉ ମଧ୍ୟ ଏଥିପାଇଁ ଦେଶ ପକ୍ଷରେ ଜମିର ଉତ୍ପାଦନବୃଦ୍ଧି ଅତି ଜରୁରୀ; କିନ୍ତୁ ଦୁଃଖର କଥା, ଭାରତର ଉତ୍ପାଦନପରିମାଣ ଦିନକୁଦିନ ବରଂ କମିବାରେ ଲାଗିଛି । ଯେତେ ଚେଷ୍ଟା କରାଗଲେ ମଧ୍ୟ ଉତ୍ପାଦନ ବୃଦ୍ଧି ଏପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ ; ଏଥିର ଦ୍ରୁତ ପ୍ରତିକାର ହେବା ବାଞ୍ଛନୀୟ । ଆମ ପଡ଼ୋଶୀ ଚୀନ ରାଜ୍ୟରେ ପୂର୍ବ ବର୍ଷକୁ ଶତକରା ୯ ଭାଗ ଖାଦ୍ୟ କିଅଣ୍ଟ ପଡ଼ୁଥିଲେ ମଧ୍ୟ ଏବେ ଶତକରା ୨୨ ଭାଗ ବଳକା ହେଲାଣି ।

ଆମ ଦେଶରେ ଜମିର ଉତ୍ପାଦନ ପରିମାଣ ପ୍ରାୟ ସବୁ ଦେଶ ତୁଳନାରେ କମ୍ । ଉଦାହରଣ ସ୍ୱରୂପ ଆମ ଦେଶରେ ଏକ ଏକର ଜମିରୁ ହାରାହାରି ୧୨୦୦ ପାଉଣ୍ଡ୍ ଧାନ ଉତ୍ପାଦିତ ହେଉଥିବା ସ୍ଥଳେ ମିଶର ଦେଶରେ ୩୦୦୦ ପାଉଣ୍ଡ୍, ଜାପାନରେ ୩୫୦୦ ପାଉଣ୍ଡ୍ ଏବଂ ଚୀନ୍‌ରେ ୨୫୦୦ ପାଉଣ୍ଡ୍, ଧାନ ଉତ୍ପନ୍ନ ହୁଏ । ଆଉ ମଧ୍ୟ ହିସାବ କରି ଦେଖାଯାଉଛି ଯେ ୭୩୦ ଲକ୍ଷ ଭାରତୀୟ ଯେତିକ ପରିମାଣର ଖାଦ୍ୟଶସ୍ୟ ସେମାନଙ୍କ ଜମିରୁ ଉତ୍ପାଦନ କରନ୍ତି, କେବଳ ୭୦ଲକ୍ଷ

ଆମେରିକାବାସୀ ସେମାନଙ୍କ ଜମିରୁ ସେହି ପରିମାଣ ଖାଦ୍ୟ-ଶସ୍ୟ ପାଇପାରନ୍ତି । ସେହିପରି ଭାରତରେ ଏକ ଏକର ଜମିରୁ କେବଳ ୯୦ ପାଉଣ୍ଡ କପା ଆଦାୟ ହେଉଥିବା ସ୍ଥଳେ ମିଶରରେ ଏକ ଏକର ଜମିରୁ ହାରାହାରି ୪୦୦ ପାଉଣ୍ଡ କପା ଆଦାୟ ହୁଏ । ଭାରତରେ ଏକର ପିଛା ୬୬୨ ପାଉଣ୍ଡ ଗହମ ଆଦାୟ ହେଉଥିବା ସ୍ଥଳେ ମିଶରରେ ୧୯୧୮ ପାଉଣ୍ଡ, ଜାପାନରେ ୧୭୧୯ ପାଉଣ୍ଡ ଓ ଚୀନରେ ୧୦୦୦ ପାଉଣ୍ଡ ଗହମ ଆଦାୟ ହୁଏ । ଏହିପରି ଅନେକ ଉଦାହରଣ ଦିଆଯାଇ ପାରେ । ଏସବୁ ଉଦାହରଣରୁ ଆମ ଜମିର ଉତ୍ପାଦନ-ପରିମାଣ ସମ୍ପର୍କରେ ସ୍ପଷ୍ଟ ଧାରଣା ଜାତ ହୁଏ । ଅନ୍ୟାନ୍ୟ ଅସୁବିଧା ମଧ୍ୟରେ ଭାରତୀୟ କୃଷୀର ବୈଜ୍ଞାନିକ କୃଷିପ୍ରଣାଳୀ ସମ୍ପର୍କୀୟ ଅଜ୍ଞତା ହିଁ ଏକ ପ୍ରଧାନ କାରଣ । ଜମିକୁ ଖାଇବାକୁ ଦେଲେ ହିଁ ଜମି ଆମ୍ଭମାନଙ୍କୁ ଖାଇବାକୁ ଦେବ—ଏହା ଭୁଲିଗଲେ ଚଳିବ ନାହିଁ । "ଗାଈ ମୁହଁରେ ଦୁଧ" ବୋଲି କଥାରେ କହନ୍ତି । ସେହିପରି ଆମ ଜମି ଭୋକିଲା ରହୁଥିବାରୁ ଦିନକୁଦିନ ତାହାର ଉତ୍ପାଦନ ପରିମାଣ କମି ଯାଉଛି । ଜମିର ଜୀବନ ଅଛି ଓ ସେ ଖାଦ୍ୟ ଖାଏ—ଏହା ବୁଝିବାକୁ ହେବ । ସୁଖର କଥା ଯେ ଆମ୍ଭ ଜାତୀୟ ସରକାର ବିଭିନ୍ନ ସାର ପ୍ରସ୍ତୁତ କରି ଜମିକୁ ଉର୍ବର କରିବା ପାଇଁ କେତେକ ଯୋଜନା କାର୍ଯ୍ୟକାରୀ କରୁଛନ୍ତି ।

ଜୈବିକ ସାର ଫସଲ ଉତ୍ପାଦନ ପାଇଁ ବିଶେଷ ଉପ-ଯୋଗୀ; କିନ୍ତୁ କୃତ୍ରିମ ବା ରସାୟନିକ ସାର ଗୋଟିଏ ବା ଦୁଇଟି ବର୍ଷର ଉତ୍ପାଦନରେ ଜମିର ସମସ୍ତ ଉର୍ବରଶକ୍ତି ଶୋଷି ଆଣେ । ଫଳରେ ଅଳ୍ପଦିନ ପରେ ଜମି କ୍ରମେ ଅନୁର୍ବର ହୋଇ-

ଉଠେ । କୃତ୍ରିମ ସାର ଜମିର ସ୍ୱାଭାବିକ ଖାଦ୍ୟ ନୁହେଁ—ଏହା ତାହାର ଔଷଧ । ତେଣୁ ଜମିର ରୋଗ ସ୍ୱରୂପ ଧାତବ ଲବଣ ଅଭାବ ଘଟିଲେ ଏହା ଦିଆଯାଇ ପାରେ । ଏହି ସାର ମାଟିରେ ଥିବା କେତେକ ଜୀବାଣୁଙ୍କୁ ନଷ୍ଟ କରିଦିଏ । ପରୀକ୍ଷା କରି ଦେଖାଯାଇଛି ଯେ, କୃତ୍ରିମ ସାରପ୍ରୟୋଗ କରାଯାଉଥିବା ଜମିରୁ ଯେଉଁ ଫସଲ ଆଦାୟ କରାଯାଏ, ତାହା ଅନେକ ଦିନ ବ୍ୟବହାର କରିବାଦ୍ୱାରା ମନୁଷ୍ୟ ଦୁର୍ବଳ ଓ ଅସୁସ୍ଥବୋଧ କରେ ; କାରଣ ଏଥିରେ ଖାଦ୍ୟପ୍ରାଣର ଅଭାବ ଥାଏ । ତେଣୁ ଖତ, କମ୍ପୋଷ୍ଟ (ମିଶ୍ର) ସାର, ସବୁଜ ସାର, ମୂତ୍ରସାର, ସୁନାସାର (night soil compost) ପ୍ରଭୃତି ଯେପରି ଜମିରେ ବହୁଳ ଭାବେ ପ୍ରୟୋଗ କରାଯାଇ ପାରେ, ସେପରି ବ୍ୟବସ୍ଥା ହେବା ଉଚିତ । ସବୁ ରକମର ଅଳିଆ ଆବର୍ଜନାକୁ ଗୋଟିଏ ଖାତରେ ଗୋବର ଓ ମୂତ୍ରଦ୍ୱାରା ପଚାଇ କିଛିଦିନ ପରେ ପ୍ରୟୋଗ କରାଗଲେ ଜମିର ଉତ୍ପାଦନ ପରିମାଣ ସହଜରେ ବଢ଼ିପାରନ୍ତା । ଧୂଳିରୁ ହିଁ ଧନର ସୃଷ୍ଟି—ଏହା ଆମକୁ ମନେ ରଖିବାକୁ ହେବ । ଏହି ଦୃଷ୍ଟିରୁ ଅଳିଆ ଆବର୍ଜନା ଯେପରି ନଷ୍ଟ ନ ହୋଇ ଖତରେ ପରିଣତ ହୁଏ, ସେଥିପାଇଁ ପୂର୍ଣ୍ଣପ୍ରାଣ ଜାତୀୟ ଉଦ୍ୟମ ହେବା ଆବଶ୍ୟକ ।

ଆମ ଦେଶରେ ଗୋବରକୁ ଘସି କରି ଜାଳିବାର ବଦଭ୍ୟାସ ରହିଆସିଛି । ଏହି ଅବସ୍ଥାର ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଆମ ଜମିସବୁ ଭୋକିଲା ରହିବା ଖୁବ୍ ସ୍ୱାଭାବିକ । ଲୋକମାନେ ଘର ପାଖରେ ଅଧିକ ଗଛ ଲଗାଇ ଜାଳେଣି କାଠର ଅଭାବ ଦୂର କରିବା ଦରକାର; କାରଣ ଏହା

ନ ହେବା ପର୍ଯ୍ୟନ୍ତ ଉପି ପାଣବା ବନ୍ଦ ହେବ ନାହିଁ । ଏ ଦିଗରେ ପ୍ରତ୍ୟେକ ଭାରତୀୟର କର୍ତ୍ତବ୍ୟ ରହିଛି । ସେହିପରି ଆମ ଦେଶର ଚାଷୀ ଚନାବାଦାମ, ସୋରିଷ ପ୍ରଭୃତି ତୈଳବୀଜ ଆମଦାନି କରି ବନ୍ଦୀ କରନ୍ତି; କିନ୍ତୁ ଏହାଦ୍ୱାରା ଜମିର ଅତି ମୂଲ୍ୟବାନ ଖାଦ୍ୟ ଅର୍ଥାତ୍ ପିଡ଼ିଆ ଜମି ନିକଟରୁ ଦୂରକୁ ଚାଲିଯାଏ । ଘଣାରେ ତେଲ ପେଡ଼ ଯେପରି ଜମିରେ ଚାଷୀମାନେ ଅଧିକରୁ ଅଧିକ ପିଡ଼ିଆ ବ୍ୟବହାର କରନ୍ତି, ସେଥିର ବ୍ୟବସ୍ଥା କରାଯିବା ଉଚିତ । ଜମିରୁ ଯେତିକି ଫସଲ ଆଦାୟ କରାଯାଏ, ସେହି ପରିମାଣର ସାର ତାହାକୁ ଦେବାକୁ ହେବ । ଉଧାର ସୁଝିଲେ ହିଁ ଜମି ଆମକୁ ଧାର ଦେବ ।

ଲୋକଙ୍କୁ ଠିକ୍ ସମୟରେ ପାଣି ଯୋଗାଇ ଦିଆଯାଇ-ପାରିଲେ ସେମାନେ ଅଳସୁଆ ହୋଇ ରହନ୍ତେ ନାହିଁ । ଏ ଦିଗରେ କ୍ଷୁଦ୍ର ଜଳସେଚନ ଯୋଜନାମାନ କରାଯାଇ ଲୋକଙ୍କୁ ପାଣି ଯୋଗାଇ ଦିଆଯିବାର ତୁରନ୍ତ ବ୍ୟବସ୍ଥା ହେବା ଦରକାର । କମ୍ୟୁନିଷ୍ଟ ଚୀନ୍ ଦେଶରେ ବର୍ତ୍ତମାନ ଲକ୍ଷ ଲକ୍ଷ କୂଅ ଖୋଳାଇବା କାମ ଚାଲିଛି; କିନ୍ତୁ ଦୁଃଖର କଥା, ବର୍ତ୍ତମାନ ଅଜସ୍ର ଟଙ୍କା ବଡ଼ ବଡ଼ ଜଳସେଚନ ଯୋଜନାରେ ଖର୍ଚ୍ଚ ହେଉ-ଅଛି । ଏହା ଫଳରେ ଦେଶରେ ଅର୍ଥସଙ୍କଟ ଦେଖାଦେଇଛି । ଫସଲକୁ ବନ୍ୟାଦାଉରୁ ରକ୍ଷାକରିବା ଓ ଜଳ ବିଦ୍ୟୁତ୍ ଶକ୍ତିର ଉତ୍ପାଦନ ଦୃଷ୍ଟିରୁ ବଡ଼ ବଡ଼ ଜଳସେଚନର ଆବଶ୍ୟକତା ଅବଶ୍ୟ ସ୍ୱୀକାର୍ଯ୍ୟ; କିନ୍ତୁ ପ୍ରଥମେ କ୍ଷୁଦ୍ର କ୍ଷୁଦ୍ର ଜଳସେଚନ-ଯୋଜନା ପ୍ରତି ଅଧିକ ଗୁରୁତ୍ୱ ଦିଆଯିବା ଉଚିତ ।

ଆମ ଦେଶରେ ୩୭ କୋଟି ଏକର ଚାଷଯୋଗ୍ୟ ଜମି ରହିଛି । ଅଥଚ ସେଥିରୁ ବର୍ତ୍ତମାନ ପ୍ରାୟ ୨୩ କୋଟି ୨୦ ଲକ୍ଷ

ଏକର ବୃଦ୍ଧ ହେଉଅଛି; ତେଣୁ ଅବଶିଷ୍ଟ ଜମିକୁ ଜମିହୀନ ଗୃହୀଙ୍କ ମଧ୍ୟରେ ବାଣ୍ଟି ଦିଆଯିବା ଉଚିତ । ଏଥିପାଇଁ ସରକାରୀ ବ୍ୟବସ୍ଥା ହେବା ଦରକାର । ଚୀନ ରାଜ୍ୟର ୪୭ କୋଟି ଲୋକଙ୍କ ମଧ୍ୟରେ ପୂର୍ବେ ୩୦ କୋଟି ଲୋକ ଭୂମିହୀନ କୃଷକ ଥିଲେ; କିନ୍ତୁ ସେଠାରେ ସରକାରଙ୍କ ତରଫରୁ ଏବେ ଦେଶର ଭୂସମ୍ପତ୍ତିକୁ ଜମିଦାରମାନଙ୍କଠାରୁ ଆଣି ଭୂମିହୀନ କୃଷକମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଛି । ଆଜି ମଧ୍ୟ ଜମିର ପରିମାଣ ଅନୁସାରେ ସେଥିରୁ ଆଦାୟ ହେଉଥିବା ଖଜଣାର ମାତ୍ରାଭେଦ ରଖାଯିବା ଉଚିତ; ଅର୍ଥାତ୍ ଅଳ୍ପ ଜମି ଉପରେ ଏକର ପିଛା ଅପେକ୍ଷାକୃତ କମ୍ ଓ ଅଧିକ ଜମି ଉପରେ ଏକର-ପିଛା ଅପେକ୍ଷାକୃତ ଅଧିକ ଖଜଣା ଆଦାୟ କରାଯିବା ଦରକାର । ଜମିର ଖଜଣା ସମ୍ପର୍କରେ ଏହି ମୌଳିକ ନୀତି ଗୃହୀତ ହେଲେ ଆପେ ଆପେ ଭୂସଂସ୍କାର କରାଯାଇ ପାରିବ ଓ ସମାଜରୁ ଅର୍ଥନୈତିକ ଅସନ୍ତୋଷ ମଧ୍ୟ ଲୋପ ପାଇଯିବ । ଜମିର ସୁସମ ବଣ୍ଟନ କରିବାକୁ ହେଲେ ଅଧିକ ଜମି ଭୋଗ କରୁଥିବା ଲୋକଙ୍କ ଉପରେ ଅତ୍ୟଧିକ କରଭାର ପଡ଼ିବା ଉଚିତ । ଏହା ଫଳରେ ସେମାନେ ବାଧ୍ୟ ହୋଇ ଅଧିକ ଭୋଗ କରୁଥିବା ଜମିକୁ ଜମିହୀନ କୃଷକଙ୍କୁ ଦେଇଦେବେ ।

ଆମ ଦେଶରେ ସରକାରଙ୍କ ତରଫରୁ ଜମିହୀନ ଲୋକଙ୍କୁ କିଛି କିଛି ଆର୍ଥିକ ସାହାଯ୍ୟ ଓ ଜମି ଦିଆଯିବା ଉଚିତ । ଚୀନ ଦେଶ ପରି ଆମ୍ଭମାନଙ୍କୁ ମଧ୍ୟ ବହୁଳ ଗୃହ ଉପରେ ଅଧିକ ଦୃଷ୍ଟି ଦେବାକୁ ହେବ । ଗୋଟିଏ ଜମିରୁ ବର୍ଷକରେ ଯେପରି ଦୁଇ ବା ତିନି ରକମର ଫସଲ ଆମଦାନି ହୁଏ, ସେପରି ଯୋଜନା

କାର୍ଯ୍ୟକାରୀ ହେବା ଲୋଡ଼ା । ଦେଶର ପ୍ରତ୍ୟେକ ଲୋକ ଯେପରି ଯଥାଶକ୍ତି ଉତ୍ପାଦନବୃଦ୍ଧିରେ ସାହାଯ୍ୟ କରନ୍ତି, ସେପରି ବ୍ୟବସ୍ଥା ଗ୍ରହଣ କରିବାକୁ ହେବ । ଗାନ୍ଧିଜୀ କହିଥିଲେ—"ଯେ ଦୁଇଟି ଶସ୍ୟ ଖାଉଛି, ସେ ଗୋଟିଏ ଶସ୍ୟ ଉତ୍ପାଦନ କରିବା ଉଚିତ ।" ଏଭଳି ଚାଷୁଆ ନୀତି ଗ୍ରହଣ ନ କଲେ ଦେଶର ଖାଦ୍ୟସଙ୍କଟ ଦୂର ହୋଇପାରିବ ନାହିଁ ।

ଖାଦ୍ୟ ସମସ୍ୟାର ସମାଧାନ ପାଇଁ ଜଙ୍ଗଲର ସଂରକ୍ଷଣ ଆବଶ୍ୟକ । ଜଙ୍ଗଲସବୁ ଉଜୁଡ଼ି ଗଲେ ବନ୍ୟାର ଦାଉ ପ୍ରବଳ ହେବ ଓ ଅଧିକ ମୃତ୍ତିକା କ୍ଷୟ ଆରମ୍ଭ ହେବ; କାରଣ ଗଛଲତା ଜମିକୁ ବାନ୍ଧି ରଖେ ଓ ନିଜର ଆବଶ୍ୟକତା ପାଇଁ ମାଟି ଦେହରେ ବର୍ଷା ପାଣି ସାଇତି ରଖେ । ତେଣୁ ଅଧିକ ପରିମାଣରେ ଜଙ୍ଗଲକଟା ଚାଲିଲେ ଜମିସବୁ ଟାଙ୍ଗରା ଭୂଇଁ ପାଲଟି ଯିବ ଓ ମୃତ୍ତିକାକ୍ଷୟ ଫଳରେ ଜମିର ଉର୍ବରଶକ୍ତି ବହୁ ପରିମାଣରେ ନଷ୍ଟ ହୋଇଯିବ । ଜଙ୍ଗଲବୃଦ୍ଧି ଓ ତାର ସଂରକ୍ଷଣ କାର୍ଯ୍ୟ ଅର୍ଥନୀତିର ଏକ ପ୍ରଧାନ ଦିଗ ହେବା ଉଚିତ ।

ଆମର ଖାଦ୍ୟାଭାବ ଦୃଷ୍ଟିରୁ ହିଁ ଅଧିକ ଉତ୍ପାଦନ ଆବଶ୍ୟକ ହୋଇପଡ଼ିଛି ; କିନ୍ତୁ ଦୁଃଖର କଥା ଜମି ଦେହରୁ ଆମେ ଯେଉଁ ଖାଦ୍ୟପଦାର୍ଥ ପାଉଁ, ତାହାର ଯଥାଯଥ ବିନିଯୋଗ କରି ପାରୁ ନାହିଁ । ମାଟି ମା ଆମ ପାଇଁ ଯେଉଁ ଆହାର ତିଆରି କରେ, ଏହା ଯେପରି ନଷ୍ଟ ନ ହୁଏ ତାହା ଦେଖିବାକୁ ହେବ; କିନ୍ତୁ ଆମେ ଖାଇ ନ ଜାଣି ଖାଦ୍ୟ ପଦାର୍ଥରେ ଥିବା ପ୍ରଚୁର ଖାଦ୍ୟପ୍ରାଣ ନଷ୍ଟ କରୁ । ଉଦାହରଣ ସ୍ୱରୂପ ଚାଉଳକୁ ଅତିରିକ୍ତ ସଫା କରିବା, ଭାତରୁ ପେଜ ଗାଳିବା, ପରିବାରୁ ଚୋପା

ଛଡ଼ାଇବା, ତରକାରୀକୁ ଅତିରିକ୍ତ ସିଝାଇବା ଓ ସେଥିରେ ଅଧିକ ମସଲା ଦେବା ଦ୍ୱାରା ଆମେ ସେସବୁର ଖାଦ୍ୟପ୍ରାଣ ନଷ୍ଟ କରି ଦେଉଁ । ଫଳରେ ଅଳ୍ପ ଖାଦ୍ୟ ପଦାର୍ଥରୁ ଆମ ଶରୀର ଲୋଡୁଥିବା ଖାଦ୍ୟପ୍ରାଣ ମିଳିପାରେ ନାହିଁ । ବାସ୍ତବିକ୍ ଖାଇ ଜାଣିବାର ଉପାୟ ହିଁ କେତେକ ପରିମାଣରେ ଆମ ଖାଦ୍ୟ-ସମସ୍ୟାର ସମାଧାନ କରିପାରେ । ଆମ ସ୍କୁଲ୍, କଲେଜ ଓ ଶିକ୍ଷକସମ୍ପ୍ରଦାୟର ଏ ଦିଗରେ କଣ କୌଣସି କର୍ତ୍ତବ୍ୟ ନାହିଁ ?

ଭାରତରେ ବର୍ଷକୁ ଚାଉଳ ଆମଦାନୀର ପରିମାଣ ଦୁଇ କୋଟି ଟନ ହୋଇଥିବା ସ୍ଥଳେ ଖର୍ଚ୍ଚ ଛ'କୋଟି ଟନ ହୁଏ । ତେଣୁ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଆମେ ଚାଉଳ ଖର୍ଚ୍ଚ କମାଇଦେବା ଉଚିତ ।

ଆମ ଦେଶରେ ଶତକଡ଼ା ଦଶ ଭାଗ ଖାଦ୍ୟଶସ୍ୟ ଅଭାବ ପଡ଼ୁଥିବା ସ୍ଥଳେ ଅନିଷ୍ଟକାରୀ କୀଟପତଙ୍ଗମାନଙ୍କ ଦ୍ୱାରା ଶତକଡ଼ା କୋଡ଼ିଏ ଭାଗ ଖାଦ୍ୟଦ୍ରବ୍ୟ ବର୍ଷକୁ ବର୍ଷ ନଷ୍ଟ ହେଉଅଛି । ତେଣୁ ଆମ ଦେଶରେ ଅଯଥା ନଷ୍ଟ ହେଉଥିବା ଖାଦ୍ୟଶସ୍ୟକୁ ଶତକଡ଼ା ଦଶ ଭାଗ କମାଇ ଦିଆଯାଇ ପାରିଲେ ଅକ୍ଳେଶରେ ଦେଶର ଖାଦ୍ୟସଂକଟ ଦୂର ହୋଇପାରିବ ।

## ସମବାୟ ସଂଗଠନ

ସମବାୟ ସଂଗଠନ ବ୍ୟତୀତ ଦେଶର ଅଗ୍ରଗତି ସମ୍ଭବ ନୁହେଁ । କେବଳ ବ୍ୟକ୍ତିଗତ ଉଦ୍ୟମ ଫଳରେ ଅନେକ କାର୍ଯ୍ୟ ହାସଲ କରିହୁଏ ନାହିଁ; ତେଣୁ ସଂଘବଦ୍ଧ ସହଯୋଗ ସୂତ୍ରରେ ଆମ୍ଭମାନଙ୍କୁ ସେସବୁ କରିବାକୁ ହେବ । ପାଶ୍ଚାତ୍ୟ ଦେଶମାନଙ୍କରେ

ଲୋକସାଧାରଣ ସଂଗଠିତ ହୋଇ ସମବାୟ ସୂତ୍ରରେ ଅଗ୍ରଗତି ସାଧନ କରି ପାରୁନାହାନ୍ତି; ତେଣୁ ଏ ଦିଗରେ ଆମଲୋକ ସାଧାରଣ ଓ ସରକାରଙ୍କର ମିଳିତ ଉଦ୍ୟମ ନିତାନ୍ତ ଆବଶ୍ୟକ ।

ସମବାୟ ସଂଗଠନ ଫଳରେ ଦେଶ ପୁଞ୍ଜିବାଦ ଓ ଶୋଷଣର କବଳରୁ ଅନେକ ପରିମାଣରେ ମୁକ୍ତିଲାଭ କରେ; କାରଣ କୃଷି, ଶିଳ୍ପ ଓ ବାଣିଜ୍ୟ-ବ୍ୟବସାୟ ସମବାୟ ସୂତ୍ରରେ ଭଲ ପରିଚାଳିତ ହୁଏ । ଲୋକସାଧାରଣ ଇଚ୍ଛାକଲେ କିଛି କିଛି ଟଙ୍କା ଦେଇ ଦେଶର ଶିଳ୍ପ ଓ ବାଣିଜ୍ୟ-ବ୍ୟବସାୟକୁ ହାତରେ ରଖି ସେସବୁ ସୁନ୍ଦର ଭାବରେ ଚଳାଇ ପାରନ୍ତେ । ବ୍ୟକ୍ତିଗତ ମାଲିକତ୍ୱରେ ଏସବୁ ଛାଡ଼ି ଦିଆଯିବା ଅନୁଚିତ । ଶିଳ୍ପ ଓ ବାଣିଜ୍ୟ-ବ୍ୟବସାୟର ଜାତୀୟକରଣ ହେବ ବା ସେସବୁ ସମବାୟ ସଂଗଠନ ଦ୍ୱାରା ପରିଚାଳିତ ହେବ—ଏହା ହିଁ ଆମର ଜାତୀୟ ଲକ୍ଷ୍ୟ ହେବା ଆବଶ୍ୟକ । ଲାଭଖୋର ଓ ପୁଞ୍ଜିବାଦୀ ଶିଳ୍ପପତି-ମାନଙ୍କ ଉପରେ ଏତେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଲଦିଦେଇ ଦେଶ ନିଶ୍ଚିନ୍ତ ରହିବା ଠିକ୍ ହେବ ନାହିଁ ।

ଦେଶସାରା ସମବାୟ ସଂଗଠନଦ୍ୱାରା ଧନ ଓ କ୍ଷମତାର ବିକେନ୍ଦ୍ରୀକରଣ ସମ୍ଭବ ହେବ ଓ ଫଳରେ ସମାଜରେ ସାମ୍ୟବାଦ ସୁପ୍ରତିଷ୍ଠିତ ହୋଇପାରିବ । ଏହାଦ୍ୱାରା ଶିଳ୍ପବ୍ୟବସାୟର ବିକାଶ ପଥରେ ଅର୍ଥାଭାବ ଯୋଗୁଁ ପ୍ରତିବନ୍ଧକ ରୂପେ ଠିଆ ହୋଇଥିଲା, ତାହା ଦୂର ହୋଇ ପାରିବ । ଆମ ଦେଶରେ ଅଧିକାଂଶ ଗରିବ; ତେଣୁ ବ୍ୟକ୍ତିଗତ ଭାବରେ କୃଷି, ଶିଳ୍ପ ଓ ବାଣିଜ୍ୟ-ବ୍ୟବସାୟ କ୍ଷେତ୍ରରେ ଅର୍ଥବିନିଯୋଗର କ୍ଷମତା ସେମାନଙ୍କର ନାହିଁ; କିନ୍ତୁ ଅଧିକାଂଶ ଲୋକ ଏଥିପାଇଁ ଅଳ୍ପ କିଛି

କିଛି ଟଙ୍କା ସହଜରେ ଦେଇପାରିବେ । ଅବଶ୍ୟ ଲୋକଙ୍କ ମଧ୍ୟରେ ଏଥିପାଇଁ ପ୍ରଚୁର ଦ୍ୱାରା ଆଗ୍ରହ ସୃଷ୍ଟି କରିବାକୁ ହେବ; କାରଣ ଆମ ଦେଶର ଲୋକେ ସେମାନଙ୍କର ସଞ୍ଚିତ ଅର୍ଥକୁ ସରଗାତରେ ରଖିବା ଓ ଅଳଙ୍କାର କିଣିବାରେ ଖର୍ଚ୍ଚ କରିବାକୁ ଭଲ ପାଆନ୍ତି । ଗାଁଗହଳର ଲୋକଙ୍କୁ ସଂଗଠିତ କରି ସମବାୟ ସଂଗଠନ ପ୍ରତି ସେମାନଙ୍କର ବିଶ୍ୱାସ ସ୍ଥାପନ କରିବାକୁ ହେବ । ଜାଣିବୁ ଅସାଧୁତା ହେତୁ ଆମଦେଶରେ ସମବାୟ ସଂଗଠନ ଆଦୌ ତିଷ୍ଠି ପାରୁନାହିଁ ; କାରଣ ସଂଗଠନର ପରିଚାଳକମାନେ ସାଧାରଣଙ୍କ ଧନ ଆତ୍ମସାତ୍ କରିବାର ଦୃଷ୍ଟାନ୍ତ ଏ ଦେଶରେ ବିରଳ ନୁହେ । ଏଥିପ୍ରତି କଡ଼ା ସରକାରୀ କଟକଣା ପ୍ରୟୋଗ କରାଯିବାର ବ୍ୟବସ୍ଥା ହେବା ଉଚିତ । ଆମ ଜାତୀୟ ସରକାର ମଧ୍ୟ ଏଥିପ୍ରତି ଯଥାଯଥ ଦୃଷ୍ଟି ଦେଉଥିବା ଆନନ୍ଦର ବିଷୟ ।

ପ୍ରତିଦ୍ୱନ୍ଦ୍ୱିତା ଦୂରକରି ସହଯୋଗମୂଳକ ଭାବରେ କୌଣସି କାର୍ଯ୍ୟ କରିବାର ପଦ୍ଧତିକୁ ସମବାୟ ପଦ୍ଧତି କୁହାଯାଏ । ସମୂହ ସ୍ୱାର୍ଥ ଦୃଷ୍ଟିରୁ ସମବାୟ ସଂଗଠନର ଆବଶ୍ୟକତା ତେର ଅଧିକ । ପ୍ରତିଦ୍ୱନ୍ଦ୍ୱିତା ସବୁରକମ ଅନାଚାରର ମୂଳ; ତେଣୁ ସମାଜରୁ ଏହି ପ୍ରତିଦ୍ୱନ୍ଦ୍ୱୀ ଭାବ ଦୂର ନ ହେବା ପର୍ଯ୍ୟନ୍ତ ଏହା ନାନାବିଧ ଅନାଚାରର କବଳରୁ ମୁକ୍ତି ପାଇପାରିବ ନାହିଁ । ଫଳରେ ରାମରାଜ୍ୟ-ପ୍ରତିଷ୍ଠା କେବଳ କଳ୍ପନାର ସାମଗ୍ରୀ ହୋଇ ରହିବ ।

ସମବାୟ ସଂଗଠନ ଜରିଆରେ ସ୍ୱାବଲମ୍ବୀ ଅଞ୍ଚଳ-ଗଠନ ସହଜ ହୋଇ ଉଠିବ; କାରଣ ଏହି ସଂଗଠନ ଗୋଟିଏ ଅଞ୍ଚଳର ବିଭିନ୍ନ ଆବଶ୍ୟକତା ଅନୁସାରେ ଉତ୍ପାଦନ ପାଇଁ ସମୂହ ଉଦ୍ୟମ ଚଳାଇବ । ଖାଦ୍ୟ, ବସ୍ତ୍ର, ବାସ, ସ୍ୱାସ୍ଥ୍ୟ, ଶିକ୍ଷା

ପ୍ରଭୃତି ଜୀବନଧାରଣର ମୌଳିକ ଆବଶ୍ୟକତା ତୁଲାଇବା ପାଇଁ ଏହା ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବ । ଫଳରେ ଏହା ସାମାଜିକ ଶାନ୍ତିଶୃଙ୍ଖଳାସ୍ଥାପନର ଭିତ୍ତିଭୂମି ହୋଇଉଠିବ । କୃଷିର ଉନ୍ନତି ପାଇଁ ଏହା କୃଷକମାନଙ୍କୁ ଉନ୍ନତ ଧରଣର ଯନ୍ତ୍ରପାତି, ସାର, ବିହନ, ଋଣ, ବଳଦ ପ୍ରଭୃତି ଯୋଗାଇବାର ଦାୟିତ୍ୱ ନେବ । ଆଉ ମଧ୍ୟ ସହଯୋଗୀ ଖାଦ୍ୟଭଣ୍ଡାରମାନ ଖୋଲି ସେହି ଅଞ୍ଚଳର ଲୋକଙ୍କୁ ଖାଦ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଉଦ୍‌ବୃତ୍ତ ଉତ୍ପାଦନକୁ ବାହାରେ ବିକ୍ରୀ କରିବ । ଏହି ସଂଗଠନ ଉତ୍ପାଦନର ସୁରକ୍ଷା ପାଇଁ ଉନ୍ନତ ଧରଣର ଶସ୍ୟଗୋଲା ସବୁ ଖୋଲିବ; କାରଣ ସାଇତି ରଖି ନ ପାରିବା ହେତୁ ଘରେଘରେ ଯେତେ ଖାଦ୍ୟଶସ୍ୟ ନଷ୍ଟ ହୁଏ, ସେଥିରେ ଆମର ଖାଦ୍ୟ ଅଭାବ ପ୍ରାୟ ଦୂର ହୋଇପାରନ୍ତା; ତେଣୁ ଏହା ଏକ ଜାତୀୟସମସ୍ୟା । ଏହି ସମସ୍ୟାର ସମାଧାନ ପାଇଁ ସମବାୟ ସଂଗଠନରେ ଦେଶ ଲାଗିପଡ଼ିବା ଦରକାର ।

ସମବାୟ ସଂଗଠନ ଗାଁଗହଳରେ ଥିବା ଗରିବ କୃଷକଙ୍କର ଆଶାଭରସାର ସ୍ଥଳ ହେବା ଉଚିତ । ସେମାନଙ୍କର ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ବିକାଶସାଧନ କରିବା ଏହି ସଂଗଠନର ମୂଳ ଲକ୍ଷ୍ୟ ହୋଇ ରହିବ । ଲୋକଙ୍କର ଖାଦ୍ୟାଭାବ ଓ ଅର୍ଥାଭାବ ଦୂର କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ପ୍ରତିଦିନ କାମ ଯୋଗାଇବାର ପୂର୍ଣ୍ଣ ଦାୟିତ୍ୱ ଏହା ଗ୍ରହଣ କରିବ । ରୁଷ୍ ଦେଶପରି ଆମ ଦେଶରେ ସମବାୟ କୃଷିବ୍ୟବସ୍ଥା ଚାଲୁ ହୋଇପାରିଲେ ଲୋକଙ୍କର ଅର୍ଥନୈତିକ ସ୍ୱଚ୍ଛଳତା ସହଜ ହୋଇପାରନ୍ତା । ଆଉ ମଧ୍ୟ ଶିକ୍ଷା, କୃଷି ଓ

ଅବସରବିନୋଦନର ସୁନ୍ଦର ବ୍ୟବସ୍ଥା ଫଳରେ ଲୋକଙ୍କର ସର୍ବମୁଖୀ ବିକାଶ ଅସମ୍ଭବ ହୋଇ ରହନ୍ତା ନାହିଁ । ସମବାୟ ସଂଗଠନ ତରଫରୁ ଲାଭାଂଶର ଅର୍ଦ୍ଧାଧିକ ପରିମାଣ ବିଭିନ୍ନ ଗ୍ରାମସଂଗଠନ କାର୍ଯ୍ୟରେ ବିନିଯୁକ୍ତ ହେବା ଉଚିତ । ଏହିପରି ଦେଶସାରା ସେବାନୁଷ୍ଠାନସବୁ ଗଢ଼ାଯାଇ ପାରିଲେ ଦେଶ ଅଳ୍ପକେ ହସିଉଠନ୍ତା ।

# ଖଦୀ-ଅର୍ଥନୀତି

ଗାନ୍ଧିଜୀ କହିଛନ୍ତି—"ଗ୍ରାମ୍ୟ ସୂର୍ଯ୍ୟମଣ୍ଡଳ ମଧ୍ୟରେ ଖଦୀ ହିଁ ସୂର୍ଯ୍ୟ ଓ ଅନ୍ୟାନ୍ୟ କୁଟୀରଶିଳ୍ପସବୁ ଏଥିରେ ବିଭିନ୍ନ ଗ୍ରହ ଉପଗ୍ରହ ଇତ୍ୟାଦି ।" ଏଥିରୁ ଗ୍ରାମ-ସଂଗଠନ ପାଇଁ ସେ ଖଦୀ ଉପରେ କେତେ ଗୁରୁତ୍ୱ ଦେଉଥିଲେ, ତାହା ବୁଝାପଡ଼େ; କିନ୍ତୁ ଗାନ୍ଧିଜୀ ଖଦୀ ଉପରେ କାହିଁକି ଏତେ ଗୁରୁତ୍ୱ ଦେଇଛନ୍ତି, ତାହା ଅନେକ ବୁଝିପାରନ୍ତି ନାହିଁ; ତେଣୁ ଖଦୀ-ଅର୍ଥନୀତି ସମ୍ପର୍କରେ ବିଶେଷ ଆଲୋଚନା ଆବଶ୍ୟକ ।

ସୂତାକାଟି କେହି ଜୀବିକା ଅର୍ଜନ କରିବା ସମ୍ଭବ ନୁହେଁ । ଅର୍ଥଲାଭ ଦୃଷ୍ଟିରୁ ସୂତାକଟାକୁ ବିଚାର କରିବା ନିତାନ୍ତ ଅସଙ୍ଗତ; ତେଣୁ ଏହାକୁ ଆମର ଏକ ପରିପୂରକ ଧନ୍ଦା ରୂପେ ଗ୍ରହଣ କରାଯାଇଅଛି । ଏହି କାମ ଜୀବନର ଏକ ଦୈନନ୍ଦିନ କର୍ତ୍ତବ୍ୟ ରୂପେ ଚିହ୍ନଣୀୟ । ଖାଇବା, ପିନ୍ଧିବା ଭଳି ଆମେ ପ୍ରତିଦିନ କିଛିସମୟ ସୂତା କାଟିବା ଉଚିତ । କେବଳ ପ୍ରତ୍ୟହ ୪୫ ମିନିଟ୍ ସମୟ ଏହି କାମ କରାଯାଇ ପାରିଲେ ଦେଶ ହସି-ଉଠନ୍ତା । ଯଦି ଭାରତର ପ୍ରତ୍ୟେକ ଲୋକ ଖଦୀକାମକୁ ଜୀବନର

ଏକ ବ୍ରତ ରୂପେ ଗ୍ରହଣ କରନ୍ତିଅନ୍ତି, ତା'ହେଲେ ଆମ ଦେଶରେ ବହୁତ ବସ୍ତ୍ର ସମସ୍ୟାର ସମାଧାନ ହୋଇପାରନ୍ତା । କେବଳ ସେତିକି ନୁହେ । ଏହାଦ୍ୱାରା ଦେଶର ଶ୍ରେଣୀ ଓ ଶୋଷଣହୀନ ସମାଜଗଠନ ଅନେକ ପରିମାଣରେ ସତ୍ୟରେ ପରିଣତ ହୁଅନ୍ତା । ଦେଶରେ ଗଣତନ୍ତ୍ରର ବିକାଶ ପାଇଁ ଏହା ମଧ୍ୟ ବାଟ ଫିଟାଇ-ପାରନ୍ତା । ଖଦୀକାମ କହିଲେ କେବଳ ସୂତାକଟା ବୁଝାଯାଏ ନାହିଁ । କପାସୃଷ୍ଟିଠାରୁ ଆରମ୍ଭ କରି ବୁଣାଇପର୍ଯ୍ୟନ୍ତ ସବୁ କାମ କରିବାକୁ ହେବ । କେତେଗୁଡ଼ିଏ ଗାଁକୁ ନେଇ ସ୍ୱାବଲମ୍ବୀ ଅଞ୍ଚଳ ଗଠନ କରାଯିବ । ବସ୍ତ୍ର ଦିଗରେ ଯେପରି ସେହି ଅଞ୍ଚଳର ଲୋକେ ପରହାତ ମୁଠାକୁ ଚାହିଁ ନ ରହନ୍ତି, ସେ ଦିଗରେ କାମ କରିବାକୁ ହେବ । ପ୍ରତ୍ୟେକ ଗ୍ରାମବାସୀ ଆବଶ୍ୟକତାନୁସାରେ କପାଚାଷ କରିବେ ଓ ପ୍ରତ୍ୟହ ଅଧଘଣ୍ଟାଏ ସୂତା କାଟିବେ । ଏହା ବାଦ୍ ପ୍ରତ୍ୟେକ ଗ୍ରାମରେ ଆବଶ୍ୟକତା ଦୃଷ୍ଟିରୁ କେତେ-ଖଣ୍ଡ ଉନ୍ନତ ଧରଣର ହାତତନ୍ତ ଗୃହ ହାତକଟା ସୂତାକୁ ବୁଣିବାର ବ୍ୟବସ୍ଥା ହେବ । ଏହା ହିଁ ଗାନ୍ଧିଜୀଙ୍କ ଜୀବନର ସ୍ୱପ୍ନ ଥିଲା । କେବଳ ଅଧଘଣ୍ଟାଏ ସୂତାକାଟି ନିଶ୍ଚିନ୍ତ ରହିଲେ ଖଦୀକାମ ହୋଇଗଲା ବୋଲି ବୁଝିବା ଭୁଲ୍ । ନିତିଦିନିଆ କାମ ବ୍ୟତୀତ ଆମର ବଳକା ବା ବିଶ୍ରାମ ସମୟରେ ହିଁ ଖଦୀକାମ କରିବାକୁ ହେବ ।

ଆମ ଦେଶ ପୂର୍ବେ ବସ୍ତ୍ରଶିଳ୍ପରେ ପୃଥିବୀପ୍ରସିଦ୍ଧ ହୋଇ ଯାଇଥିଲା । ସେତେବେଳେ ଆମ ଦେଶର ବସ୍ତ୍ର ୟୁରୋପ ମହା-ଦେଶରେ ରାଜାମହାରାଜମାନଙ୍କର ବିଳାସ ସାମଗ୍ରୀ ଥିଲା । ଆରବ ଓ ତୁର୍କିସ୍ଥାନ ବାଟ ଦେଇ ଆମ ଦେଶର ଲୁଗାପଟା ୟୁରୋପରେ

ଯାଇ ପହଞ୍ଚୁଥିଲା; ତେଣୁ ୟୁରୋପୀୟ ବଣିକ ଓ ବ୍ୟବସାୟୀମାନେ ଭାରତୀୟ ଶିଳ୍ପବିଭବ ପ୍ରତି ଆକୃଷ୍ଟ ହୋଇ ସମୁଦ୍ର ରାସ୍ତା ଖୋଜିବାରେ ଲାଗିଲେ; କିନ୍ତୁ ବର୍ତ୍ତମାନ ଆମର କି ଶୋଚନୀୟ ଅବସ୍ଥା ! ଲଜ୍ଜା ଢାଙ୍କିବାକୁ ଆଜି ଆମର ବସ୍ତ୍ରର ଅଭାବ। ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ କ'ଣ ଆଉ ହୋଇବ ନାହିଁ ?

କୁଟୀରଶିଳ୍ପ କୌଣସି ଦେଶରେ ମରି ଯାଇନାହିଁ । ବରଂ ସମଗ୍ର ଦୁନିଆଁର ଦୃଷ୍ଟି ଆଜି କୁଟୀରଶିଳ୍ପ ପ୍ରତି ଆକୃଷ୍ଟ ହୋଇଅଛି । ଶିଳ୍ପର ଯେତେ ଯନ୍ତ୍ରିକରଣ କରାଗଲେ ମଧ୍ୟ ହସ୍ତଶିଳ୍ପ ମରିଯାଏ ନାହିଁ; କାରଣ ଯନ୍ତ୍ରଶିଳ୍ପ ଓ କୁଟୀରଶିଳ୍ପ ମଧ୍ୟରେ କେତେକ କ୍ଷେତ୍ରରେ ପ୍ରତିଯୋଗିତା ଦରକାର ପଡ଼େନାହିଁ । ଉଦାହରଣ ସ୍ୱରୂପ ହାତତନ୍ତରେ କେତେକ ସ୍ୱତନ୍ତ୍ର କିସମର ଲୁଗାପଟା ବୁଣାଯାଏ ; କିନ୍ତୁ ସେସବୁ ଲୁଗାକଲରେ ବୁଣାଯାଇ ପାରେ ନାହିଁ । ଦ୍ୱିତୀୟତଃରେ ହାତତନ୍ତ ଯେଉଁ ସୂତା ଦରକାର କରେ, ତାହା କଲବିଶେଷ ଦରକାର କରେ ନାହିଁ । ତୃତୀୟତଃରେ କଲ ପାଇଁ ଦରକାର ହେଉ ନ ଥିବା ବଳକା ସୂତା ଓ ହାତକଟା ସୂତା ହି ହାତତନ୍ତରେ ବୁଣାଯାଏ । ଚତୁର୍ଥରେ ହାତତନ୍ତ ଦ୍ୱାରା ବେକାର ସମସ୍ୟାର ଆଂଶିକ ସମାଧାନ ସମ୍ଭବ ହୁଏ । ପଞ୍ଚମରେ ଏହା ଲୋକସାଧାରଣଙ୍କ ପାଇଁ ଏକ ସ୍ୱାଧୀନ ପରିପୂରକ ଧନ୍ଦାର ସୁବିଧା ଦିଏ । ଷଷ୍ଠରେ ହାତବୁଣା ଲୁଗାଦ୍ୱାରା ଟଙ୍କା ପୁଞ୍ଜିପତି ହାତକୁ ଯାଇ ଦେଶର ଶୋଷଣରେ ସାହାଯ୍ୟ କରେ ନାହିଁ ।

ଲୁଗାକଲ ଅପେକ୍ଷା ହାତତନ୍ତର ବିକାଶ ପାଇଁ ଆମ ଦେଶରେ କେତେକ ସୁବିଧା ରହିଛି—

(୧) ପ୍ରଥମରେ ଏହି ଶିଳ୍ପ ପାଇଁ ବିଶେଷ ପୁଞ୍ଜିର ଆବଶ୍ୟକତା ନାହିଁ; ତେଣୁ ଯେ କୌଣସି ଲୋକ ଅତି ସହଜରେ ଏହି ଶିଳ୍ପକୁ ଗ୍ରହଣ କରିପାରେ ।

(୨) ଆମ ଦେଶରେ ମାନବିକ-ଶକ୍ତି ଅତି ଶସ୍ତା; ତେଣୁ ଅଳ୍ପ ଖର୍ଚ୍ଚରେ ଘରେ ଘରେ ବସ୍ତ୍ରୋତ୍ପାଦନ ସମ୍ଭବ ହୋଇପାରେ ।

(୩) ଏହି ଶିଳ୍ପ ପାଇଁ ବାହାର ବଜାର ଦରକାର ନାହିଁ । ପ୍ରତି ଗାଁରେ ଏଥିପାଇଁ ଚାହିଦା ରହିଛି ।

(୪) ପ୍ରଧାନ ଧନ୍ଦା କୃଷିକାର୍ଯ୍ୟ ପ୍ରଭୃତି କରିସାରି ପ୍ରତିଦିନ କିଛି ସମୟ ବୁଣାଇ କାମ କରାଯାଇ ପାରେ । ଯେ କୌଣସି ସମୟରେ ତନ୍ତକାମ କରିହେବ ଓ ଛାଡ଼ି ଦେଇହେବ ।

(୫) ଘରେ ବସି ସ୍ୱାଧୀନ ଭାବରେ ଏହି କାମ କରିହେବ । ଯେଉଁ ଦିନ ଅନ୍ୟ କିଛି କାମ ନାହିଁ, ସେ ଦିନ ଏ ବୁଣାଇକାମରେ ହାତ ଦିଆଯାଇ ପାରେ ।

(୬) ପରିବାରର ପ୍ରତ୍ୟେକ ଲୋକ ତାଙ୍କର ଅବସର ସମୟରେ ଏଥିପାଇଁ କିଛି କିଛି ସାହାଯ୍ୟ କରିପାରିବେ ।

(୭) ଗାଁ ଲୋକଙ୍କ ବିଶ୍ରାମ ସମୟର ବିନିଯୋଗ ପାଇଁ ଏହି ଶିଳ୍ପ ଏକ ଉତ୍କୃଷ୍ଟ ପନ୍ଥା ।

(୮) କଳ ପରି ହାତତନ୍ତରେ କୌଣସି ବିପଦ ଆପଦ ନାହିଁ । ଏଥିରେ ସ୍ୱାସ୍ଥ୍ୟହାନିର ମଧ୍ୟ କୌଣସି ଆଶଙ୍କା ନ ଥାଏ ।

(୯) ଶିଳ୍ପୀର ନୈପୁଣ୍ୟ ଓ ସୃଜନଶକ୍ତିର ବିକାଶସାଧନ ପାଇଁ ଏଥିରେ ଅବକାଶ ରହିଛି । ଏସବୁ ଦୃଷ୍ଟିରୁ ପୂର୍ଣ୍ଣପ୍ରାଣ ଜାତୀୟ ଉଦ୍ୟମ ଫଳରେ ଆମ ଦେଶର ପୂର୍ବ ଶିଳ୍ପସମୃଦ୍ଧି ଫେରି ଆସିବା ଅସମ୍ଭବ ହୁଅନ୍ତା ନାହିଁ ।

ଆମ ଦେଶର ଲୋକଙ୍କ ଦୃଷ୍ଟିରୁ ବିଶ୍ରାମ ସମୟର ବିନିଯୋଗ ପାଇଁ ସୂତାକଟା ଏକ ସୁନ୍ଦର ଗୌଣ ବ୍ୟବସାୟ । ବିଶେଷତଃ ଛୋଟାଠାରୁ ବୁଢ଼ାପର୍ଯ୍ୟନ୍ତ ପ୍ରତ୍ୟେକେ ଏହି କାମରେ ହାତ ଦେଇ ପାରିବେ । ଆମ ଦେଶର ଅଧିକାଂଶ ସ୍ତ୍ରୀଲୋକ ବୃଥା ଆଲୋଚନାରେ ଅନେକ ସମୟ ବ୍ୟୟ କରନ୍ତି; ତେଣୁ ସେହି ସମୟରେ ସେମାନେ ସୂତାକାଟିଲେ ଅନେକ ଦୁଶ୍ଚିନ୍ତାରୁ ରକ୍ଷା ପାଇପାରିବେ । ଏହା ବ୍ୟତୀତ ଅକର୍ମଣ୍ୟ ଲୋକମାନେ ମଧ୍ୟ ସହଜରେ ଏହି କାମ କରିପାରିବେ । ଗାନ୍ଧୀଜୀ ବହୁ ଭାବଚିନ୍ତା ଏପରି ଏକ ପରିପୂରକ ଧନ୍ଦା ଉଦ୍ଭାବନ କରିଛନ୍ତି ଯାହା କି ଦେଶର ପ୍ରତ୍ୟେକ ଲୋକ ପ୍ରତି ଗ୍ରହଣୀୟ ହୋଇ ପାରିବ । ଆଉ ମଧ୍ୟ ଏହାଦ୍ୱାରା ଦେଶର ଏକ ପ୍ରଧାନ ବସ୍ତ୍ର ସମସ୍ୟାର ସହଜ ସମାଧାନ ସମ୍ଭବ ହେବ ।

ସୂତାକଟାର ଉପଯୋଗିତା ସମ୍ପର୍କରେ କେତେକ ବିଷୟ ମଧ୍ୟ ବିଚାରିବାର କଥା—

(୧) ଏଥିପାଇଁ ପୁଞ୍ଜି ବା ମୂଲ୍ୟବାନ୍ ଯନ୍ତ୍ରପାତିର ଆବଶ୍ୟକତା ନାହିଁ ।

(୨) କପାଚାଷ କରାଗଲେ ବାହାରୁ କଞ୍ଚାମାଲ ଆଣିବା ଦରକାର ନାହିଁ ।

(୩) ଏଥିପାଇଁ ଅଧିକ ଦକ୍ଷତା, କଳାକୌଶଳ ବା ଚତୁରତା ଦରକାର ପଡ଼େ ନାହିଁ ।

(୪) ଏଥିରେ ମଧ୍ୟ ଅଧିକ ଶାରୀରିକ ପରିଶ୍ରମ କରିବାକୁ ପଡ଼େ ନାହିଁ । ବାଳକବାଳିକା ଓ ବୁଢ଼ାବୁଢ଼ୀମାନେ ଘରେ ବସି ଏହି କାମ କରିପାରିବେ ।

(୫) ସୂତାକଟା ଆମ ଦେଶରେ ଆବହମାନ କାଳରୁ ଚାଲି ଆସୁଥିଲା । ଏହା ସହିତ ଆମ ସଭ୍ୟତା ଓ ସଂସ୍କୃତି ନିବିଡ଼ ଭାବରେ ସମ୍ପୃକ୍ତ । ସୂତାକଟା ଆମ ଧର୍ମବିଶ୍ୱାସର ବିରୋଧୀ ନୁହେଁ ।

(୬) ଏହା ଏକ ସ୍ଥାୟୀ ଆୟର ପନ୍ଥା । ଏଥିରେ ଅନିଶ୍ଚିତତା କିଛି ନାହିଁ ।

(୭) ବିଭିନ୍ନ ପାଣିପାଗରେ ଏହା ବନ୍ଦ ହୋଇଯାଏ ନାହିଁ । ଘରେ ରହି ଏହି କାମ ଇଚ୍ଛାନୁସାରେ କରାଯାଇ ପାରେ ।

(୮) ଆଜିକାଲି କଳିଯୁଗରେ ମଧ୍ୟ ଆମ ଦେଶର ଏକ କୋଟି ଲୋକ ତନ୍ତଲୁଗା ଉପରେ ନିର୍ଭର କରନ୍ତି । ଆଜି ମଧ୍ୟ ହାତତନ୍ତ ଦେଶର ଏକ ତୃତୀୟାଂଶ ବସ୍ତ୍ରାଭାବ ଦୂର କରେ । ତେଣୁ ଅଧିକ ଲୋକ ସୂତା କାଟିଲେ ତନ୍ତଗୁଡ଼ିକ ଅଯଥା ସୂତାକଳ ଉପରେ ନିର୍ଭର କରିବେ ନାହିଁ ।

(୯) ଗରିବ ଲୋକଙ୍କ ମଧ୍ୟରେ ଏହି ବ୍ୟବସାୟ ସୁସମ ଭାବରେ ଧନବଣ୍ଟନ କରିପାରିବ ।

(୧୦) ଏଥିପାଇଁ ବହିର୍ବାଣିଜ୍ୟର ଆବଶ୍ୟକତା ନାହିଁ । ଏହି ବ୍ୟବସାୟ ପାଇଁ ରେଳ ବା ଜାହାଜ ଦରକାର ନାହିଁ ।

(୧୧) ଏହା ଅର୍ଦ୍ଧ ବେକାରସମସ୍ୟାର ସମାଧାନରେ ଅନେକ ପରିମାଣରେ ସାହାଯ୍ୟ କରିପାରିବ ।

(୧୨) କଳରେ ବ୍ୟବହାର ହୋଇପାରୁ ନ ଥିବା ନିକୃଷ୍ଟ ଧରଣର ତୁଳା ହିଁ ବଜାରରେ କିଣିବାକୁ ମିଳେ ଓ ସେଥିରୁ ସୂତା କଟାଯାଏ ।

ଏ ସବୁ ଦୃଷ୍ଟିରୁ ଆମ ଦେଶ ପାଇଁ ସୂତାକଟା ଓ ଲୁଗାବୁଣା କୃଷିର ପରିପୂରକ ଧନ୍ଦାରୂପେ ଗୃହୀତ ହେବା ନିତାନ୍ତ ଆବଶ୍ୟକ ।

ଗାନ୍ଧିଜୀଙ୍କ ନେତୃତ୍ୱରେ ଆମ ଦେଶରେ ଖଦିକାମ ଆରମ୍ଭ ହୋଇଛି । ଯେଉଁମାନେ ଏଥିରେ ଅଟଳ ବିଶ୍ୱାସ ରଖି କାମ କରୁଛନ୍ତି, ସେମାନଙ୍କ ଜୀବନରେ ଅନେକ ପରିବର୍ତ୍ତନ ହୋଇଥିବାର ଦେଖାଯାଇଛି । ଅବଶ୍ୟ ଆମ ଦେଶରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ବର୍ତ୍ତମାନ ସ୍ୱାର୍ଥସିଦ୍ଧି ଦୃଷ୍ଟିରୁ ଖଦି ବ୍ୟବହାର କରୁଛନ୍ତି । ତେଣୁ ଗାନ୍ଧିଜୀ ଖଦିକାମର ପବିତ୍ରତା ରକ୍ଷା ପାଇଁ ବିଶେଷ ଦୃଷ୍ଟି ଦେଇଥିଲେ; କିନ୍ତୁ ବର୍ତ୍ତମାନ ଯେ କେହି ଲୋକ ଖଦିକାମ ନ କରି ଖଦି ପିନ୍ଧିବାର ସୁବିଧା ପାଇବାଦ୍ୱାରା ଜମିଦାର ଓ ପୁଞ୍ଜିପତିମାନେ ଏହାକୁ ଏକ ଶୋଷଣର ଅସ୍ତ୍ରରୂପେ ବ୍ୟବହାର କରୁଅଛନ୍ତି । ପ୍ରକୃତ ଖଦିପ୍ରେମୀମାନେ ଏଥିପାଇଁ ସତର୍କ ହେବା ଉଚିତ ।

ଖଦିକାମଦ୍ୱାରା କେତେ ଲୋକଙ୍କ ମଧ୍ୟରେ ଭବିଷ୍ୟତ ପ୍ରତି ଆତ୍ମବିଶ୍ୱାସ ଆସିଛି ; କାରଣ ସେମାନେ ଖଦି-ସ୍ୱାବଲମ୍ବୀ ହୋଇପାରିଛନ୍ତି । ଏହି ଖଦିଦ୍ୱାରା ଧନୀ, ଦରିଦ୍ର ଓ ଶିକ୍ଷିତ ଅଶିକ୍ଷିତ ମଧ୍ୟରେ ଥିବା ବାହ୍ୟ ପରିଧାନଗତ ପାର୍ଥକ୍ୟ ଲୋପ ପାଇଯାଇଛି । ଆଜିକାଲି ଅତି ଉଚ୍ଚ ସ୍ତରର ଲୋକେ ଖଦି ପିନ୍ଧିବା ଦ୍ୱାରା ଲୋକସାଧାରଣ ସେମାନଙ୍କୁ ନିଜର ବୋଲି ଗ୍ରହଣ କରିଛନ୍ତି ଓ ଫଳରେ ସେମାନଙ୍କ ମଧ୍ୟରେ ଆତ୍ମୀୟତା ପ୍ରକାଶ ପାଉଛି । ଖଦି ସରଳ ଜୀବନଯାପନ

ଓ ଉନ୍ନତ ଚନ୍ତାର ପ୍ରତୀକ । ଏହି କାମ ଫଳରେ ଦେଶରେ ସାଧୁତା ଓ ସରଳତା ପ୍ରତି ଆଗ୍ରହ ଆସୁଅଛି । ଆଜ ମଧ୍ୟ ଖଦି ଆମ ଦେଶର ଜାତୀୟ ପୋଷାକ ରୂପେ ପରିଚିତ ହୋଇ-ଆସିଛି । ଖଦି ସହିତ ଭାରତର ରାଜନୈତିକ ଇତିହାସ ସମ୍ପୃକ୍ତ । ତେଣୁ ଏହାକୁ ପିନ୍ଧିବାଦ୍ୱାରା ଲୋକଙ୍କ ମନରେ ଜାତୀୟ ଭାବ ଜାଗ୍ରତ ହୋଇପାରୁଛି । ଆଜ ମଧ୍ୟ ଅର୍ଥଶାସ୍ତ୍ର ଦୃଷ୍ଟିରୁ ଏହା ମିଲ୍‌ଲୁଗାର ମୂଲ୍ୟବୃଦ୍ଧିକୁ ଅଟକାଇ ରଖିବାରେ ସାହାଯ୍ୟ କରୁଛି । ଦେଶରେ କୌଣସି କାରଣରୁ ଲୁଗା-ଦୁର୍ଭିକ୍ଷ ପଡ଼ିଲାବେଳେ ଖଦି ଲୋକଙ୍କୁ ଅନେକ ସାହାଯ୍ୟ କରିପାରିବ । କୌଣସି ଲୋକ ଖଦିକାମ କରି ଶିଖିଥିଲେ ଲୁଗା-ଦୁର୍ଭିକ୍ଷକୁ ଭ୍ରୁକ୍ଷେପ କରିବ ନାହିଁ—ଏହା ଧ୍ରୁବ ସତ୍ୟ ।

ମିଲଲୁଗା ଉପରେ ନିର୍ଭର କରିବାଦ୍ୱାରା ମିଲ୍‌ମାଲିକଙ୍କର ଶୋଷଣର ଅସ୍ତ୍ରରେ ଶାଣ ଦିଆଯାଉଛି—ଏହା ବୁଝିବା ଉଚିତ; କାରଣ ମିଲ୍‌ଲୁଗା ବ୍ୟତୀତ ଆମର ଗତ୍ୟନ୍ତର ନାହିଁ । କିନ୍ତୁ ଆମେ ଯଦି ଖଦି-ସ୍ୱାବଲମ୍ବୀ ହୋଇପାରନ୍ତୁ, ତା'ହେଲେ ମିଲ୍‌ଲୁଗାର ମୂଲ୍ୟ ସ୍ୱତଃ କମିଯାଆନ୍ତା । ଗାନ୍ଧିଜୀଙ୍କ ଇଚ୍ଛାନୁସାରେ ପ୍ରତ୍ୟେକ ଦେଶବାସୀ ଖଦିପ୍ରେମୀ ହୋଇ ଉଠିଲେ ଲୁଗାକଳସବୁ ଆପେ ଆପେ ବନ୍ଦ ହୋଇଯାଆନ୍ତା ଓ ଦେଶରେ ଶୋଷଣହୀନ ସମାଜ ସ୍ୱତଃ ଗଢ଼ିଉଠନ୍ତା ।

ସ୍ୱାଧୀନତା ପରେ ଆମ ଖଦିଶାସ୍ତ୍ରରେ ଅବଶ୍ୟ କେତେକ ପରିବର୍ତ୍ତନ କରାଯାଇ ପାରେ । ଗାନ୍ଧିଜୀ କହିଥିଲେ—ସୂତା-ଛିଅରେ ସ୍ୱାଧୀନତା ଝୁଲୁଛି । ଯେ ସୂତାଟିଏ କାଟୁଛି, ସେ ଦେଶର କିଛି ସେବା କରୁଛି ବୋଲି ସେ କହୁଥିଲେ

କିନ୍ତୁ ସେ ଦିନ ଯାଇଛି । ଆମେ ଏବେ ସ୍ୱାଧୀନ; ତେଣୁ ସୂତାକଳଗୁଡ଼ିକର ଜାତୀୟକରଣ କରାଯାଇ ସେହି କଳସୂତା ସାହାଯ୍ୟରେ ଘରେ ଘରେ ହାତତନ୍ତ ଚାଲିବାର ଜାତୀୟ-ଯୋଜନା ହେବା ଉଚିତ । ଏହା ଫଳରେ ଦେଶରୁ ମୁଣ୍ଡିବାଦ ଅପସରିଯିବା ସଙ୍ଗେ ସଙ୍ଗେ ବେକାରସମସ୍ୟାର ମଧ୍ୟ ସମାଧାନ ହୋଇପାରିବ । ଅବଶ୍ୟ କେତେକ ସ୍ୱତନ୍ତ୍ର କିସମର କନା ତିଆରି କରିବା ପାଇଁ ଅଳ୍ପ କେତେକ ସମାଜୀକୃତ ଲୁଗାକଳ ରଖାଯାଇ ପାରେ; କିନ୍ତୁ ଅନ୍ୟ କଳଗୁଡ଼ିକୁ ଭିନ୍ନ ଉଦ୍ଦେଶ୍ୟରେ ବ୍ୟବହାର କରାଯିବା ଉଚିତ । ମୋ ମତରେ ପରିବର୍ତ୍ତିତ ପରିସ୍ଥିତି ଦୃଷ୍ଟିରୁ ବସ୍ତ୍ରସମସ୍ୟାର ସମାଧାନ ପାଇଁ ଏହା ଏକ ବାସ୍ତବ ପନ୍ଥା । ଲୁଗାବୁଣା ଉପରେ ଯଥାଯଥ ଗୁରୁତ୍ୱ ଦିଆ ନ ଯିବାରୁ ହିଁ ଆମ ଦେଶରେ ଏତେ ଉଦ୍ୟମ ସତ୍ତ୍ୱେ ଖଦିକାମ ଆଗେଇପାରିଲା ନାହିଁ—ଏହା ବୁଝିବାକୁ ହେବ ।

ପୂର୍ବେ ଭାରତର ଗାଁ ଗାଁରେ ହାତତନ୍ତ ଚାଲୁଥିଲା ; ତେଣୁ ଆଜିକାଲି ପ୍ରାୟ ପ୍ରତି ଗାଁରେ କେତେ ଘର ତନ୍ତୀ ବସବାସ କରି ରହିଥିବାର ଦେଖାଯାଏ । ଯୋଗାଯୋଗର ଅସୁବିଧା ଦୃଷ୍ଟିରୁ ଏବେ ମଧ୍ୟ ଆସାମ ପ୍ରଦେଶର ପ୍ରତି ଗାଁରେ ହାତତନ୍ତ କାମ କରୁଛି । ବାସ୍ତବିକ୍ ଭାରତ ମଧ୍ୟରେ କେବଳ ଆସାମ ପ୍ରଦେଶ ହିଁ ତା'ର ପୂର୍ବ ବସ୍ତ୍ରଶିଳ୍ପର ଗୌରବ ରକ୍ଷା କରିପାରିଛି; ତେଣୁ ଏବେ ବି ଆମ୍ଭେମାନେ ମୃତକଳ୍ପିତ ହୋଇ ବାହାରିଲେ ପୁନର୍ବାର ଆମ ଦେଶର ବସ୍ତ୍ରଗୌରବ ଫେରିଆସନ୍ତା । ଜାତୀୟ ଯୋଜନାନୁସାରେ ଅବଶ୍ୟ ଏ ଦିଗରେ

କମ ହେବା ଦରକାର । ଉନ୍ନତ ଧରଣର ବୁଣାଇ ଶିକ୍ଷା ପାଇଁ ସରକାରଙ୍କ ତରଫରୁ ପ୍ରତି ଜିଲ୍ଲାରେ ତାଲିମ୍ କେନ୍ଦ୍ରମାନ ଖୋଲିଯିବା ଉଚିତ । ଏହା ବ୍ୟତୀତ ସାଧାରଣ ଶିକ୍ଷା ସହିତ କୃଷି ଓ ବୁଣାଇ ସମ୍ପର୍କୀୟ ବୈଷୟିକ ଶିକ୍ଷା ଦେଇ ଛାତ୍ରମାନଙ୍କୁ ଭବିଷ୍ୟତ ଜୀବନ ପାଇଁ ପ୍ରସ୍ତୁତ କରାଯିବା ଦରକାର ।

ଆମ ଦେଶରେ କୁଟୀରଶିଳ୍ପର ଉନ୍ନତିସାଧନ କରିବାକୁ ହେଲେ ସରକାର ଏହାକୁ ସବୁମତେ ସୁରକ୍ଷା କରିବା ଉଚିତ । କୁଟୀରଶିଳ୍ପର ସୁରକ୍ଷା ଓ ବିକାଶ ପାଇଁ ନିମ୍ନଲିଖିତ କେତୋଟି ମୌଳିକ ନୀତି ଗ୍ରହଣ କରାଯାଇ ତଦନୁସାରେ କାମ ଆରମ୍ଭ କରାଗଲେ ଯନ୍ତ୍ରଶିଳ୍ପର ହାତରୁ ଏହା ଅନେକ ପରିମାଣରେ ରକ୍ଷା ପାଇପାରନ୍ତା ।

(୧) ପ୍ରଥମେ କଳଜାତ ଜିନିଷ ଉପରେ ଅଧିକ ଶୁଳ୍କ ବସାଯାଇ କୁଟୀରଶିଳ୍ପଜାତ ଜିନିଷକୁପୂରା ଆର୍ଥିକ ସାହାଯ୍ୟ ଦିଆଯିବା ଦରକାର । ଏହା ଫଳରେ କଳଜିନିଷ ଓ ହାତତିଆରି ଜିନିଷର ମୂଲ୍ୟରେ ଯେପରି ତାରତମ୍ୟ ନରହେ—ସେଥିପ୍ରତି ଦୃଷ୍ଟି ଦିଆଯିବା ଉଚିତ ।

(୨) କୁଟୀରଶିଳ୍ପ ପାଇଁ ଉତ୍କୃଷ୍ଟ ଧରଣର କଞ୍ଚାମାଲ ଯୋଗାଇ ଦିଆଯିବା ଉଚିତ ।

(୩) ଶିକ୍ଷା ଜରିଆରେ ଲୋକଙ୍କର କଳା ଓ ସୌନ୍ଦର୍ଯ୍ୟ-ଜ୍ଞାନର ଉନ୍ନତିସାଧନ ଆବଶ୍ୟକ ।

(୪) ଲୋକସାଧାରଣଙ୍କର କ୍ରୟଶକ୍ତିର ସଂପ୍ରସାରଣ ପ୍ରତି ମଧ୍ୟ ଯଥାଯଥ ଗୁରୁତ୍ୱ ଦିଆଯିବା ଉଚିତ । ଭାରତୀୟମାନେ ଗରିବ

ହୋଇଥିବାରୁ ଶସ୍ତା କଳଜାତ ଜିନିଷ ପ୍ରତି ସାଧାରଣତଃ ଅଧିକ ଆକୃଷ୍ଟ ହୁଅନ୍ତି ।

(୫) କୁଟୀରଶିଳ୍ପକୁ ବୈଜ୍ଞାନିକପ୍ରଣାଳୀରେ ଶିକ୍ଷା ଦଆଯିବାର ରାଷ୍ଟ୍ରୀୟ ବ୍ୟବସ୍ଥା ହେବା ଆବଶ୍ୟକ । ଆଉ ମଧ୍ୟ ଉନ୍ନତ ଧରଣର ଯନ୍ତ୍ରପାତି ସବୁ କୁଟୀରଶିଳ୍ପ କ୍ଷେତ୍ରରେ ଯେପରି ଯଥାଯଥ ଭାବରେ ବିନିଯୁକ୍ତ ହୋଇପାରେ, ସେଥିପାଇଁ ଦୃଷ୍ଟି-ଦେବାକୁ ହେବ । କୁଟୀରଶିଳ୍ପୀର ବୈଜ୍ଞାନିକ ଜ୍ଞାନାଭାବ ହିଁ କୁଟୀରଶିଳ୍ପର ଅଗ୍ରଗତିରେ ପ୍ରଧାନ ଅନ୍ତରାୟ ରୂପେ ଠିଆ-ହୋଇଛି ।

(୬) କୁଟୀରଶିଳ୍ପୀର ଅର୍ଥନୈତିକ ଅବସ୍ଥା ସ୍ୱଚ୍ଛଳ ହୋଇ ନ ଥିବାରୁ ସେ ନିଜର ଦକ୍ଷତା ବଢ଼ାଇବା ପାଇଁ ଆଦୌ ସୁଯୋଗ ସୁବିଧା ପାଉନାହିଁ । ଆଉ ଏହି କାରଣରୁ ସେ ଉନ୍ନତ ଧରଣର ଯନ୍ତ୍ରପାତିର ବ୍ୟବହାରରୁ ମଧ୍ୟ ବଞ୍ଚିତ ହେଉଅଛି ।

(୭) ୟୁରୋପ ଓ ଆମେରିକାର ଶିଳ୍ପୋନ୍ନତ ଦେଶ-ମାନଙ୍କରେ କୁଟୀରଶିଳ୍ପଜାତ ଦ୍ରବ୍ୟ ପ୍ରତି ଆସ୍ତେ ଆସ୍ତେ ଆଗ୍ରହ ବଢ଼ିବାର ଦେଖାଯାଉଛି । ସେମାନଙ୍କର ଆର୍ଥିକ ସ୍ୱଚ୍ଛଳତା ମଧ୍ୟ ଏହାର ଅନ୍ୟ ଏକ କାରଣ; ତେଣୁ ସେହିସବୁ ଦେଶରେ ଆମ ଦେଶର ବାଣିଜ୍ୟ ପ୍ରତିନିଧିମାନଙ୍କ ଜରିଆରେ କୁଟୀରଶିଳ୍ପଜାତ ଦ୍ରବ୍ୟ ଅନେକ ପରିମାଣରେ ବିକ୍ରୀ କରାଯାଇପାରନ୍ତା । ଏହା ଫଳରେ ଭାରତର ପୁରୁଷାନୁକ୍ରମିକ କଳାକୌଶଳ ମଧ୍ୟ ଆନ୍ତର୍ଜାତିକ ପ୍ରତିଷ୍ଠା ଲାଭ କରିପାରନ୍ତା ।

(୮) ଯନ୍ତ୍ରଶିଳ୍ପାନୁଷ୍ଠାନଗୁଡ଼ିକ ଯେପରି କୁଟୀରଶିଳ୍ପ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନ ପାରନ୍ତି, ସେଥିପାଇଁ ସ୍ୱତନ୍ତ୍ର ନିୟମ ପ୍ରଣୟନ କରିବାକୁ ହେବ; କାରଣ କେତେକ କଳକାରଖାନା

'ମିଲ୍ ଖଦଡ଼', ରେଶମ ଓ ପଶମଦ୍ରବ୍ୟ ଆଦି ବୁଣି କୁଟୀରଶିଳ୍ପ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଅଛନ୍ତି ।

ଇଂରେଜମାନଙ୍କ ଆଗମନ ପୂର୍ବରୁ ଭାରତରେ ପ୍ରାୟ ଅଧିକାଂଶ ଲୋକ କୁଟୀରଶିଳ୍ପ ସାହାଯ୍ୟରେ ଜୀବିକାର୍ଜନ କରୁଥିଲେ; କିନ୍ତୁ କୁଟୀରଶିଳ୍ପର ଅଧୋଗତିରେ ସେମାନେ ବାଧ୍ୟ ହୋଇ କୃଷିର ଆଶ୍ରୟ ନେଇଛନ୍ତି । ଏହା ଫଳରେ କୃଷିକାର୍ଯ୍ୟ ଲାଭଜନକ ହେଉନାହିଁ ଓ ବେକାରସମସ୍ୟା ମଧ୍ୟ ବଡ଼ ତୀବ୍ର ହୋଇଉଠିଛି ।

ନୂତନ ଚୀନ୍ ରାଜ୍ୟରେ ଖଦୀକାମକୁ ଏକ ପ୍ରଧାନ ଗ୍ରାମୋଦ୍ୟୋଗ ରୂପେ ଗ୍ରହଣ କରାଯାଇଅଛି । ଭାରତ ଅପେକ୍ଷା ସେଠାରେ ଅଧିକ ହାତକଟା ଓ ହାତବୁଣା ଲୁଗା ତିଆରି ହେଉଅଛି । ଚୀନ୍ ଏକ କମ୍ୟୁନିଷ୍ଟ ରାଜ୍ୟ; ତଥାପି ସେଠାରେ ମାନବବଳର ସହଯୋଗରେ ହିଁ ଦେଶକୁ ଗଢ଼ିବାର ଚେଷ୍ଟା ଚାଲିଛି । ଫଳରେ ଜନବହୁଳ ହେଲେ ବି ସେଠାରେ ଆଜି ଆଉ ବେକାରସମସ୍ୟା ନାହିଁ । ଗାନ୍ଧିଜୀ ଯାହା ଯାହା ଉପଦେଶ ଦେଇଯାଇଛନ୍ତି, ତାହା ବାସ୍ତବିକ୍ ଚୀନ୍ ରାଜ୍ୟରେହିଁ ଆଜି କାର୍ଯ୍ୟକାରୀ ହେଉଅଛି । ଗାନ୍ଧିଜୀଙ୍କ କଥା ତ ଆମ୍ଭମାନଙ୍କର ନିଦ ଭାଙ୍ଗିପାରିଲା ନାହିଁ; ହେଲେ ଆମ ପଡ଼ୋଶୀ ରାଜ୍ୟ ଚୀନ୍‌ର ପ୍ରଭାବ ଆମ ଉପରେ ପଡ଼ୁ ।

## ମୁଦ୍ରା-ଅର୍ଥନୀତି

ମୁଦ୍ରା ଆମର କୌଣସି ଅଭାବ ଦୂର କରିପାରେ ନାହିଁ; ଜିନିଷପତ୍ରକୁ ଅଦଳ ବଦଳ କରିବାର ସୁବିଧା ପାଇଁ ଏହାକୁ କେବଳ ଏକ ମାଧ୍ୟମ ରୂପେ ଗ୍ରହଣ କରାଯାଇଛି । ଜିନିଷପତ୍ର

ନ ମିଳିଲେ ମୁଦ୍ରା ଖାଇ କେହି ବଞ୍ଚିପାରିବ ନାହିଁ; କିନ୍ତୁ ଆଜିକାଲି ଆମେ ଏତେ ଟଙ୍କା-ପାଗଳ ହୋଇପଡ଼ୁଛୁ ଯେ ଏହି ସାଧାରଣ ସତ୍ୟଟି ଅନେକ ସମୟରେ ଭୁଲିଯାଉ । ଟଙ୍କା ଆମ୍ଭମାନଙ୍କୁ ଅନ୍ଧ କରି ଦେଇଛି; ତେଣୁ ଆମେ ଜିନିଷର ଯଥାର୍ଥ ମୂଲ୍ୟ ନ ବୁଝି କେବଳ ଟଙ୍କା ସାଇତିବାରେ ମନ ଦେଉ । ଏଥିଯୋଗୁଁ ସମାଜରେ ନାନାପ୍ରକାର ବିଭ୍ରାଟ ସୃଷ୍ଟି ହୋଉଛି ।

ଜୀବନର ବିକାଶ ପାଇଁ ଅର୍ଥ ଏକ ଉପାୟ ମାତ୍ର; କାରଣ ଖାଇ ପିଇ ସୁସ୍ଥ ଭାବରେ ବଞ୍ଚିଲେ ହିଁ ଆମେ ଆମର ସଭ୍ୟତା ଓ ସଂସ୍କୃତିର ବିକାଶସାଧନ ପାଇଁ କାମ କରି-ପାରିବା; କିନ୍ତୁ ଆଜିକାଲି ଅର୍ଥକୁ ଜୀବନର ଏକ ଲକ୍ଷ୍ୟ ରୂପେ ଗ୍ରହଣ କରାଯାଇଅଛି । ଏହା ଭାରତୀୟ ସଂସ୍କୃତିର ପୂରାପୂରି ବିରୋଧୀ । ପାଶ୍ଚାତ୍ୟ ଅର୍ଥନୀତିର ପ୍ରଭାବରେ ପଡ଼ି ଆମ୍ଭେମାନେ ଅର୍ଥସର୍ବସ୍ୱ ହୋଇ ପଡ଼ିଛୁ । ଅର୍ଥସଂଗ୍ରହଠାରୁ ଜୀବନରେ ଯେ ଅଧିକ ମହତ୍ତ୍ୱ କାର୍ଯ୍ୟ କିଛି ରହିଛି, ଆମେ ତାହା ବୁଝି ପାରୁନାହିଁ । ଏହି କାରଣରୁ ଆଜି ବିଶ୍ୱସଭ୍ୟତା ନିମ୍ନଗାମୀ ହେବାକୁ ବସିଛି । ଆଜିଠାରୁ ଆମ୍ଭେମାନେ ଏଥିପ୍ରତି ସତର୍କ ହେବା ଉଚିତ ।

ଆମେ କିପରି ଅର୍ଥସର୍ବସ୍ୱ ହୋଇପଡ଼ିଛୁ, ସେ ସମ୍ପର୍କରେ ଅନେକ ଉଦାହରଣ ଦିଆଯାଇପାରେ । ଅନେକ ଲୋକ ଗାଈଦୁଧ ବିକି ଅର୍ଥ ସଂଗ୍ରହ କରନ୍ତି । ସେମାନେ ଦୁଧଠାରୁ ଅର୍ଥ ଉପରେ ଅଧିକ ମୂଲ୍ୟ ଦିଅନ୍ତି । ଅନେକ ସମୟରେ ସେମାନଙ୍କ ପିଲାପିଲିମାନେ କ୍ଷୀର ଟିକିଏ

ନ ପାଇ ହାଡ଼କଙ୍କାଳରେ ପରିଣତ ହୁଅନ୍ତି । ଅଥଚ ଶିଶୁ-ମାନଙ୍କର ସ୍ୱାସ୍ଥ୍ୟ ପ୍ରତି ସେମାନେ ଦୃଷ୍ଟିନଦେଇ କ୍ଷୀର ବିକି ଅର୍ଥ ସଂଗ୍ରହ କରନ୍ତି । ସେହିପରି କେତେକ ଲୋକ ସବୁଜ ପନପରିବା ବଜାରରେ ବିକି କେବଳ ଲୁଣ ଭାତ ଖାଇ ଚଳନ୍ତି ଓ ବଳକା ଟଙ୍କାରେ ସୁନା ଗହଣା କିଣିବାକୁ ଭଲପାଆନ୍ତି । ଅର୍ଥ କିପରି ସମାଜରେ ଅନର୍ଥ ସୃଷ୍ଟି କରୁଛି, ଏଥିରୁ ତାହା ବେଶ୍ ବୁଝାପଡ଼େ; କାରଣ ଏହି ଅର୍ଥନୀତି ଦ୍ୱାରା ଉତ୍ପାଦନକାରୀ ମରୁଛି ଓ ଟଙ୍କାବାଲା ଟଙ୍କା ସାହାଯ୍ୟରେ ତାକୁ ଶୋଷଣ କରିବାର ସୁବିଧା ପାଉଛି ।

ଟଙ୍କାର ମୂଲ୍ୟ କେତେବେଳେ ହେଲେ ସ୍ଥିର ନୁହେଁ । ମନୁଷ୍ୟର ଦୃଷ୍ଟିରୁ ହିଁ ଟଙ୍କାର ମୂଲ୍ୟ ବଢ଼େ ବା କମେ ଧନୀ ହାତରେ ଟଙ୍କାଟିଏ ହେଲେ ତା'ର ମୂଲ୍ୟ ଯାହା, ଗରିବ ହାତକୁ ତାହା ଗଲେ ତାର ମୂଲ୍ୟ ସେପରି ରହେ ନାହିଁ । ଧନୀ ଲୋକ ପକ୍ଷରେ ଗୋଟିଏ ଟଙ୍କା ହୁଏତ ଦିନକର ସିଗାରେଟ୍ ବା ସିନେମାଖର୍ଚ୍ଚ; କିନ୍ତୁ ଗରିବ ପକ୍ଷରେ ସେହି ଟଙ୍କାଟି ଅମୂଲ୍ୟ ନିଧି । ସେ ସେଥିରେ ତା'ର ପରିବାରକୁ ହୁଏତ ଦୁଃଖେ କଷ୍ଟେ ଦୁଇ ଦିନ ଆହାର ଦେଇ ବଞ୍ଚାଇ ପାରିବ । ଧନୀ ଲୋକଙ୍କ ପାଖକୁ ଅଧିକ ଟଙ୍କା ଗଲେ ଜାତୀୟ ଅର୍ଥର ହାନି ହୁଏ ଓ ଗରିବ ଲୋକଙ୍କ ହାତକୁ ଗଲେ ଏହାର ଅଭିବୃଦ୍ଧି ଘଟେ; ତେଣୁ ଉତ୍ପାଦନବୃଦ୍ଧି ନ କରି ଜାତୀୟ-ସମ୍ପଦ ବୃଦ୍ଧି କରିବାକୁ ହେଲେ ଯେପରି ଅଧିକ ଟଙ୍କା ଗରିବଙ୍କ ହାତକୁ ଯାଏ, ସେପରି ଅର୍ଥନୀତି ଗ୍ରହଣ କରିବାକୁ ହେବ ।

ଏହି ଦୃଷ୍ଟିକୋଣରୁ ବିଚାର କଲେ କୁଟୀରଶିଳ୍ପଜାତ ଦ୍ରବ୍ୟର ମୂଲ୍ୟ ଅଧିକ ହେଲେ ମଧ୍ୟ ଜାତୀୟ ସମ୍ପଦର ଅଭିବୃଦ୍ଧି ପାଇଁ ଆମେ ସେସବୁ କିଣିବା ଉଚିତ; କାରଣ ସେହିଦ୍ୱାରା ଅଧିକ ପରିମାଣରେ ଗରିବ ଲୋକମାନଙ୍କ ହାତକୁ ଟଙ୍କା ଯିବ। ଆଉ ମଧ୍ୟ ଗରିବ ଲୋକମାନଙ୍କର ଆର୍ଥିକ ସ୍ୱଚ୍ଛଳତା ସମ୍ଭବ ହେଲେ କୃଷି ଓ କୁଟୀରଶିଳ୍ପର ବିକାଶ ସମ୍ଭବ ହେବ। ଫଳରେ ଜାତୀୟ-ଉତ୍ପାଦନ ବୃଦ୍ଧି ପାଇବ। କୁଟୀରଶିଳ୍ପଜାତ ଦ୍ରବ୍ୟର ମୂଲ୍ୟବୃଦ୍ଧି ଜାତୀୟସମ୍ପଦର ସୁସମ ବଣ୍ଟନରେ ସାହାଯ୍ୟ କରେ; କାରଣ ଶରୀର ଶ୍ରମ ହିଁ ଧନ ବଣ୍ଟନର ଉତ୍କୃଷ୍ଟ ଉପାୟ।

ଗଚ୍ଛିତ କ୍ରୟଶକ୍ତିର ଉପାୟ ସ୍ୱରୂପ ଆମ୍ଭେମାନେ ଟଙ୍କାକୁ ବ୍ୟବହାର କରୁ। ଉଦାହରଣ ସ୍ୱରୂପ ଜଣେ କୃଷକ ବର୍ଷକେ ଥରେ ବା ଦୁଇ ଥର ଫସଲ ଅମଳ କରେ। ତା'ର ସେହି ଉତ୍ପାଦନ ବଦଳରେ ତାକୁ ଗୋଟିଏ ପୂରା ବର୍ଷ ବଞ୍ଚି ରହିବାକୁ ହୁଏ; କିନ୍ତୁ ସେ ତା'ର ଉତ୍ପାଦନକୁ ବର୍ଷ ବର୍ଷ ଧରି ସାଇତି ରଖିବା ସମ୍ଭବ ନୁହେଁ; କାରଣ ସେସବୁ ନଷ୍ଟ ହୋଇଯିବାର ଆଶଙ୍କା ରହିଛି। ଜିନିଷ-ମାଲକୁ ସାଇତି ରଖିବାର ସୁବିଧା ମଧ୍ୟ ସମସ୍ତଙ୍କର ନାହିଁ। ତେଣୁ ସେସବୁ ବିକ୍ରି କରି ଦେଇ ଟଙ୍କା ଆକାରରେ ସେ ନିଜର କ୍ରୟଶକ୍ତିକୁ ସଂଚୟ କରିରଖେ। ଏଥିପାଇଁ ଟଙ୍କାର ଆବଶ୍ୟକତା ସ୍ୱୀକାର୍ଯ୍ୟ; କିନ୍ତୁ ଟଙ୍କାର ମୂଲ୍ୟ ସବୁବେଳେ ସ୍ଥିର ରହେ ନାହିଁ। ଟଙ୍କାର ମୂଲ୍ୟ କୌଣସି କାରଣରୁ କମିଗଲେ ଚାଷୀ ବିଚରା ତାର ଗଚ୍ଛିତ କ୍ରୟଶକ୍ତିରେ ବର୍ଦ୍ଧକ

ଚଳପାରେ ନାହିଁ; ବରଂ ହନ୍ତସନ୍ତ ହୁଏ; ତେଣୁ ଟଙ୍କାର ମୂଲ୍ୟ ଯେପରି ସ୍ଥିର ରହେ, ସେପରି ନୀତି ଗ୍ରହଣ କରିବାକୁ ହେବ। ଏହା କୃଷିପ୍ରଧାନ ଦେଶ ପକ୍ଷରେ ଏକ ଅପରିହାର୍ଯ୍ୟ ଆବଶ୍ୟକତା।

ଟଙ୍କା ପଚି ନଷ୍ଟ ହୋଇଯିବାର ଜିନିଷ ନୁହେଁ; ଫଳରେ ଟଙ୍କାବାଲା ଉତ୍ପାଦନକାରୀ ଅପେକ୍ଷା କେତେକ ଅଧିକ ସୁବିଧା ଉପଭୋଗ କରେ। ଉଦାହରଣ ସ୍ୱରୂପ ଯେଉଁ ଲୋକର ପାଚିଲା କଦଳୀ ଅଛି, ସେ ତାହାକୁ ଶୀଘ୍ର କଟାଇବା ଉଦ୍ଦେଶ୍ୟରେ ଶସ୍ତାରେ ବିକି କରିଦିଏ; କାରଣ ବିକି ନ କଲେ ତାହା ପଚି ନଷ୍ଟ ହୋଇଯିବ; କିନ୍ତୁ ଟଙ୍କାବାଲାର ସେ ଭୟ ନ ଥାଏ। ବରଂ କୃଷୀର ଅଭାବ ବେଳେ ସେ ଟଙ୍କା ଦେଇ ବହୁ ଶସ୍ତାରେ ଜିନିଷ ପାଏ; ତେଣୁ ଟଙ୍କା ଅନେକ ସମୟରେ ଶୋଷଣର କାରଣ ହୁଏ। ସେହି ପରି ମିଲ୍ ମାଲିକମାନେ ଝୋଟ, ଧୂଆଁ ପତ୍ର ପ୍ରଭୃତିର ଦାମ୍ ବଢ଼ାଇ ଲୋକଙ୍କୁ ଖାଦ୍ୟ ପଦାର୍ଥ ବଦଳରେ ଅର୍ଥକରୀ ଫସଲ ଅଧିକ କରିବା ପାଇଁ ପ୍ରବର୍ତ୍ତାନ୍ତି। ଫଳରେ ଲୋକେ ଟଙ୍କା ପାଇଲେ ମଧ୍ୟ ଖାଇବାକୁ ପାଆନ୍ତି ନାହିଁ। ଦେଶରେ ଦୁର୍ଭିକ୍ଷ ପଡ଼େ। ଟଙ୍କାର ଅଧିକ ପ୍ରଚଳନ ଫଳରେ ଆଜିକାଲି କପରି ଜିନିଷପତ୍ର ମିଳୁ ନାହିଁ ଓ ଲୋକମାନେ କିଭଳି ହରକତ ହେଉଛନ୍ତି, ତାହା ସମସ୍ତେ ଜାଣନ୍ତି। ବାସ୍ତବିକ ଟଙ୍କା ହିଁ ପ୍ରକୃତ ଉତ୍ପାଦକ ଶ୍ରେଣୀର ଦୁର୍ଗତି ପାଇଁ ଦାୟୀ। ଟଙ୍କା ବଦଳରେ ଚାଷୀମୁହଁରୁ ତାହାର ଆହାର ବହୁ ଦୂର ଦେଶକୁ ରପ୍ତାନି ହୋଇ ଚାଲିଯାଉଛି।

ଏସବୁ ଦିଗରୁ ବିଚାର କରି ଆମ୍ଭେମାନେ ଟଙ୍କାର ବହୁଳ ବ୍ୟବହାରକୁ କମାଇ ଦେବା ଉଚିତ।

# ସାଧାରଣ ଅର୍ଥ

ଗାନ୍ଧିଜୀଙ୍କ ନୀତି ଅନୁସାରେ ସାଧାରଣ ଅର୍ଥର ବିକେନ୍ଦ୍ରୀକରଣ ହେବା ଆବଶ୍ୟକ; କାରଣ ସାଧାରଣ ଅର୍ଥର କେନ୍ଦ୍ରୀକରଣ ହେବା ଦ୍ୱାରା କ୍ଷମତାର ସ୍ୱତଃ କେନ୍ଦ୍ରୀକରଣ ହୋଇଯାଏ । ଦେଶରେ ବିଭିନ୍ନ ସ୍ୱାବଲମ୍ବୀ ଅଞ୍ଚଳ ଗଢ଼ି ସେଠାରେ ଯେପରି ସେ ଅଞ୍ଚଳର ଅର୍ଦ୍ଧାଧିକ ରାଜସ୍ୱ ବ୍ୟୟିତ ହୁଏ, ସେପରି ବ୍ୟବସ୍ଥା କରିବାକୁ ହେବ । ଏହି ରାଜସ୍ୱକୁ ଆଦାୟ ଓ ବ୍ୟୟ କରିବାର ଦାୟିତ୍ୱ ସେହି ଅଞ୍ଚଳର କୌଣସି ପ୍ରତିନିଧିମୂଳକ ଅନୁଷ୍ଠାନ ବା ଗ୍ରାମପଞ୍ଚାୟତ ଦାୟିତ୍ୱରେ ଛାଡ଼ି ଦିଆଯିବା ଉଚିତ । ବିଭିନ୍ନ ଗ୍ରାମ ମଙ୍ଗଳ କାର୍ଯ୍ୟରେ ଏହି ରାଜସ୍ୱ ଯେପରି ଯଥାଯଥ ଭାବରେ ବ୍ୟୟିତ ହୁଏ, ସେପରି ବ୍ୟବସ୍ଥା କରିବାକୁ ହେବ ।

ଲୋକସାଧାରଣଙ୍କଠାରୁ କର, ଖଜଣା ଆଦି ଜିନିଷ ଆକାରରେ ଆଦାୟ କରାଯିବାର ବ୍ୟବସ୍ଥା ହେବା ଉଚିତ । ଏହି ଜିନିଷର ରକ୍ଷଣାବେକ୍ଷଣର ଭାର ବହୁମୁଖୀ ସମିତିମାନଙ୍କ ଉପରେ ନ୍ୟସ୍ତ କରାଯିବ ଓ ସେଥିରୁ ବିଭିନ୍ନ ଗ୍ରାମୋନ୍ନତିକର କାର୍ଯ୍ୟ ପାଇଁ ଖର୍ଚ୍ଚ କରାଯିବ । ସ୍ଥାନୀୟ କର୍ମଚାରୀମାନେ ସେମାନଙ୍କର ଦରମାର ଅର୍ଦ୍ଧାଧିକ ଭାଗ ଜିନିଷ ଆକାରରେ ପାଇବେ । ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ପ୍ରଭୃତିର ଦାୟିତ୍ୱ ଏହା ଦ୍ୱାରା ପୂରାପୂରି ଲୋକମାନଙ୍କ ଉପରେ ରହିବ । ଟଙ୍କା ଆକାରରେ ଖଜଣା ଆଦାୟ ନ କରି ଜିନିଷ ଆକାରରେ ଆଦାୟ କରିବାର ବ୍ୟବସ୍ଥା ନୂଆ ଚୀନ ରାଜ୍ୟରେ ଭଲ କାମ ଦେଉଛି; ତେଣୁ ଆନ୍ତରିକ ଉଦ୍ୟମ ଫଳରେ ଏହା ଆମ ଦେଶରେ ଅସମ୍ଭବ ହେବ ନାହିଁ ।

ନିଶା, ବେଶ୍ୟା, ଜୁଆ ପ୍ରଭୃତି ଅନିଷ୍ଟକର ବ୍ୟବସାୟକୁ ପ୍ରଶ୍ରୟ ଦେଇ ସାଧାରଣ ଅର୍ଥ ବୃଦ୍ଧି କରିବା ଭଲ ଆୟୁଷାଙ୍କ

ନୀତି ଗ୍ରହଣ କରିବା ଅନୁଚିତ; କାରଣ ନିଶାରୁ ଆମ ଦେଶରେ ଅଧିକ ରାଜସ୍ୱ ଆଦାୟ ହେଲେ ମଧ୍ୟ ସେଉଁ ଜାତିଗଠନ କାର୍ଯ୍ୟରେ ଏହା ବ୍ୟୟିତ ହେଉଛି, ତାହା ଏଭଳି କାର୍ଯ୍ୟକୁ ପ୍ରଶ୍ରୟ ଦେବା ଦ୍ୱାରା ଆଦୌ ସମ୍ଭବ ହେଉ ନାହିଁ। ଉଦାହରଣ ସ୍ୱରୂପ ନିଶା, ବେଶ୍ୟା ପ୍ରଭୃତିକୁ ପ୍ରଶ୍ରୟ ଦେବା ଦ୍ୱାରା ସାଧାରଣ ଶିକ୍ଷା ଓ ସ୍ୱାସ୍ଥ୍ୟରେ ଭୟଙ୍କର ଆଞ୍ଚ ଆସୁଛି ଏବଂ ଲୋକଙ୍କର ନୈତିକ ଅଧୋଗତି ଦେଖା ଦେଉଛି। ଫଳରେ ଦେଶରେ ନାନାପ୍ରକାର ଅସାମାଜିକ କାର୍ଯ୍ୟ ବ୍ୟାପି ଯାଉଛି; ଆମକୁ ଶିକ୍ଷା, ସ୍ୱାସ୍ଥ୍ୟ, ଆତ୍ମରକ୍ଷା ଓ ଶାନ୍ତିଶୃଙ୍ଖଳା ପ୍ରଭୃତି ଦିଗରେ ଅଧିକ ଖର୍ଚ୍ଚ କରିବାକୁ ପଡ଼ୁଛି ଏବଂ ତା ସତ୍ତ୍ୱେ କୌଣସି ସୁଫଳ ଫଳୁ ନାହିଁ। ତେଣୁ ନିଶା, ଜୁଆ ପ୍ରଭୃତି ବ୍ୟବସାୟ ବନ୍ଦ କରିଦେବା ଜାତି ପକ୍ଷରେ ମଙ୍ଗଳ। ଅବଶ୍ୟ ଏହା ଫଳରେ ଦେଶର ରାଜସ୍ୱ ପରିମାଣ କମି ଯିବ। କିନ୍ତୁ ଏହା ଦ୍ୱାରା ଶିକ୍ଷା, ସ୍ୱାସ୍ଥ୍ୟ ଓ ଶାନ୍ତି ଶୃଙ୍ଖଳା ପାଇଁ ସେହିପରି ଅଧିକ ଖର୍ଚ୍ଚ କରିବାକୁ ପଡ଼ିବ ନାହିଁ; ଆମ ପକ୍ଷରେ ଜାତି ଗଠନ କାର୍ଯ୍ୟ ସହଜ ହୋଇ ଉଠିବ। ବାସ୍ତବରେ ଏହା ଏକ ଜାତୀୟ ସମସ୍ୟା। ଆମର ନେତୃବର୍ଗ ଏ ଦିଗରେ ଚିନ୍ତା କରିବା ଉଚିତ।

ବିଳାସ ଜିନିଷ ଉତ୍ପାଦନ କରିବାରେ ଅଧିକ ଲାଭ ମିଳୁଥିବାରୁ ସେଥିର ଉତ୍ପାଦନ ପ୍ରତି ଲୋକେ ଅଧିକ ଆକୃଷ୍ଟ ହେଉଛନ୍ତି। ଏହାର ପ୍ରତିକାର କରିବାକୁ ହେଲେ ବିଳାସ ସାମଗ୍ରୀ ଉପରେ ଅତ୍ୟଧିକ ଶୁଳ୍କ ବସାଯିବା ଉଚିତ।

ବୀମା, ବ୍ୟାଙ୍କ ପ୍ରଭୃତି ବ୍ୟବସାୟକୁ ମଧ୍ୟ ବ୍ୟକ୍ତିଗତ ଅଧିକାରରେ ଛାଡ଼ି ଦିଆଯିବା ଅନୁଚିତ। ଜାତି ଏସବୁ ଅନୁଷ୍ଠାନର

ନିୟନ୍ତ୍ରଣ ଓ ପରିଚାଳନା ଭାର ଗ୍ରହଣ କରିବା ନିତାନ୍ତ ଦରକାର । କାରଣ ଲୋକ ସାଧାରଣଙ୍କର ସ୍ୱାର୍ଥ ଏସବୁ ବ୍ୟବସାୟ ସହିତ ନିବିଡ଼ ଭାବରେ ଜଡ଼ିତ ରହିଛି । ଆଜିକାଲି ଆମର ଜାତୀୟ ସରକାର ଖଣି ଓ ଜଙ୍ଗଲ ସବୁ ବ୍ୟବସାୟୀ ମାନଙ୍କ ବିଦେଶୀ ବ୍ୟବସାୟୀମାନଙ୍କୁ ରାଜସ୍ୱ ବୃଦ୍ଧି ଉଦ୍ଦେଶ୍ୟରେ ପଟ୍ଟା ଦେଇ ଦେଉଛନ୍ତି; କିନ୍ତୁ ଏହା ଏକ ଆତ୍ମଘାତୀ ନୀତି । ସ୍ୱୟଂ ସରକାର ସେସବୁ ଜାତୀୟ ସମ୍ପଦକୁ କାର୍ଯ୍ୟରେ ଲଗାଇ ନ ପାରିଲେ ବରଂ ସେହି ଅବସ୍ଥାରେ ଆମର ଭବିଷ୍ୟତ୍ ବଂଶଧରମାନଙ୍କ ପାଇଁ ସେସବୁ ଛାଡ଼ି ଦେବା ଉଚିତ; କିନ୍ତୁ ଜାତୀୟ ସମ୍ପଦର ଯଥାଯଥ ବିନିଯୋଗ ନ କରି ସେସବୁ ବରବାଦ କରିଦେବା ଆଦୌ ଠିକ୍ ନୁହେଁ ।

ଦେଶର ରାଜସ୍ୱ ବୃଦ୍ଧି ପାଇଁ ଯେପରି ଧନୀ ଲୋକଙ୍କଠାରୁ ଅଧିକ ଅର୍ଥ ମିଳି ପାରିବ ସେପରି ନିୟମ ପ୍ରଣୟନ କରାଯିବା ଉଚିତ । ସାଧାରଣ ଭାବରେ ଚଳାଚଳ ପାଇଁ ଯେପରି ଅତ୍ୟାବଶ୍ୟକ ଜିନିଷଗୁଡ଼ିକର ଦରଦାମ କମେ, ସେପରି ନୀତି ମଧ୍ୟ ଗ୍ରହଣ କରିବାକୁ ହେବ ।

## ଜୀବନଧାରଣର ମାନ

ଲୋକର ଜୀବନ ଧାରଣର ମାନ ବଢ଼ିବା ଦ୍ୱାରା ଉତ୍ପାଦନ ସ୍ୱାଭାବିକ ଭାବରେ ବୃଦ୍ଧି ପାଇବ ବୋଲି ଅର୍ଥନୀତିଜ୍ଞମାନେ କହନ୍ତି; କାରଣ ଜୀବନଧାରଣର ମାନ ଯେଉଁ ପରିମାଣରେ ବୃଦ୍ଧି ପାଇବ ଅର୍ଥାତ୍ ଜୀବନ ଧାରଣର ପ୍ରଣାଳୀ ଯେତିକି ଜଟିଳ ହେବ, ଲୋକେ ନିଜର ଆୟ ବୃଦ୍ଧି କରିବା ପାଇଁ ସେତିକି ତତ୍ପର ହେବେ । କିନ୍ତୁ ଗାନ୍ଧିଜୀ ଏହି ମତର ପକ୍ଷପାତୀ ନୁହନ୍ତି ।

ଜୀବନଧାରଣର ମାନ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ରହୁ ବୋଲି ସେ ଚାହୁଁଥିଲେ ।

ଜୀବନଧାରଣର ମାନ ବଢ଼ାଇ ଦେବା ଦ୍ୱାରା ଅଯଥା ଅନେକ କୃତ୍ରିମ ଅଭାବ ସୃଷ୍ଟି ହୋଇଥାଏ; ଫଳରେ ଜୀବନରେ ଶାନ୍ତି ସନ୍ତୋଷ ମିଳେ ନାହିଁ । ପାଶ୍ଚାତ୍ୟ ଦେଶର ଲୋକେ କେବଳ ନିଜର ଜୀବନଧାରଣର ମାନ ବଢ଼ାଇବା ପାଇଁ ପାଗଳ ହୋଇ ଉଠିଛନ୍ତି; କିନ୍ତୁ ସେହି ପରିମାଣରେ ସେମାନଙ୍କର ଜୀବନରେ ଶାନ୍ତି, ସନ୍ତୋଷ ବୃଦ୍ଧି ପାଇ ନାହିଁ । ବରଂ ୟୁରୋପୀୟ ଦେଶମାନଙ୍କରେ ଅଶାନ୍ତି, ଅସନ୍ତୋଷ, ଅଭାବ, ବାଦ ବିସମ୍ବାଦ ଓ ଯୁଦ୍ଧ ବିଗ୍ରହ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଜୀବନଧାରଣର ମାନ ଯେତେ ବୃଦ୍ଧି ପାଇଲେ ମଧ୍ୟ ଲୋକେ ଆତ୍ମସନ୍ତୋଷ ପାଇପାରୁ ନାହାନ୍ତି । ଲୋକଙ୍କ ମଧ୍ୟରୁ ଅଳ୍ପ ସନ୍ତୋଷ ଗୁଣ ଲୋପ ପାଇଯିବାରୁ ସେମାନେ ସର୍ବଦା ଅଶାନ୍ତିରେ ରହି ଅଛନ୍ତି । କିନ୍ତୁ ଏହି ଜାତୀୟ ଅସନ୍ତୋଷ ଦେଶ ଓ ବ୍ୟକ୍ତିର ବିକାଶ ପକ୍ଷରେ ମଙ୍ଗଳକର ନୁହେଁ ।

ଜୀବନଧାରଣର ମାନ ବଢ଼ାଇବା ଅର୍ଥ ଜୀବନଧାରଣର ପ୍ରଣାଳୀକୁ ଅଯଥା ଜଟିଳ କରିବା । ଆମେରିକାର ଲୋକେ ଜୀବନଧାରଣର ମାନ ବଢ଼ାଇବାକୁ ଯାଇ ଯେତେ ଜିନିଷ ନଷ୍ଟ କରନ୍ତି, ସେଥିରେ ଭାରତ ଭଳି ଗରିବ ଦେଶର ଅଭାବମୋଚନ ହୋଇ ପାରନ୍ତା । ଜୀବନଧାରଣର ମାନ ବଢ଼ାଇବା ଛଳରେ ବିଳାସବ୍ୟସନକୁ ପ୍ରଶ୍ରୟ ଦେବା ଆଦୌ ଠିକ୍ ନୁହେଁ । ବ୍ୟକ୍ତିଗତ ବିକାଶ ଦୃଷ୍ଟିରୁ ଲୋକସାଧାରଣଙ୍କ ସକାଶେ ଗୋଟିଏ ସାଧାରଣ ଜୀବନ ଧାରଣର ମାନ ସ୍ଥିର ହୋଇଯିବା ଉଚିତ । ସରଳ

ଜୀବନଯାପନ ଓ ଉଚ୍ଚ ଚିନ୍ତାହିଁ ଆମ ଜାତୀୟ ଆଦର୍ଶ । ଏହି ଆଦର୍ଶ ଉପରେ ଭାରତୀୟ ସଭ୍ୟତା ଓ ସଂସ୍କୃତି ପ୍ରତିଷ୍ଠିତ । ସରଳ ଜୀବନଯାପନ ଦୃଷ୍ଟିରୁ ଯେତିକି ନହେଲେ ନ ହୁଏ, ସେଥିପାଇଁ ସମସ୍ତେ ଚେଷ୍ଟା କରିବା ଅବଶ୍ୟ ପ୍ରଶଂସନୀୟ । କିନ୍ତୁ ଜୀବନଧାରଣର ମାନ ବଢ଼ାଇବାକୁ ଯାଇ ଜୀବନରେ ନାନାବିଧ ଅନାବଶ୍ୟକ ଅଭାବ ଦିନକୁ ଦିନ ବୃଦ୍ଧି କରିବା ଦେଶ ଓ ଜାତି ପକ୍ଷରେ ଆଦୌ ଶୁଭ ଲକ୍ଷଣ ନୁହେଁ ।

ଅଯଥା କୃତ୍ରିମ ଅଭାବ ସୃଷ୍ଟି ବୃଦ୍ଧି ନକରି ଉନ୍ନତ ଜୀବନ ଯାପନ ଦୃଷ୍ଟିରୁହିଁ ଆମ ଜୀବନ ଧାରଣର ମାନ ସ୍ଥିର କରିବାକୁ ହେବ । ସମାଜରେ ପ୍ରତ୍ୟେକ ଲୋକ ଯେପରି ଏହି ଉନ୍ନତ ଜୀବନ ଯାପନ ପାଇଁ ହକ୍‌ଦାର ହେବେ, ସେଥିପାଇଁ ଜାତୀୟ ଉଦ୍ୟମ ହେବା ଆବଶ୍ୟକ । ପ୍ରତ୍ୟେକ ଦେଶବାସୀଙ୍କୁ ଜୀବନଧାରଣର ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ରହି ଜୀବନ ଯାପନ କରିବାକୁ ହେବ । ଏହି ସୀମା ବାହାରେ ଥିବା ଲୋକ-ମାନଙ୍କୁ ସୀମା ଭିତରକୁ ଆଣିବା ପାଇଁ ବ୍ୟକ୍ତି ଓ ରାଷ୍ଟ୍ର ଉଭୟ ଆଡ଼ୁ ମିଳିତ ଉଦ୍ୟମ ହେବା ଆବଶ୍ୟକ । ଯେଉଁମାନେ ଏହି ନିମ୍ନତମ ଜୀବନ-ଧାରଣ-ସ୍ତରର ଆହୁରି ନିମ୍ନରେ ଅଛନ୍ତି, ସେମାନଙ୍କର ଦାୟିତ୍ୱ ସମାଜ ବହନ କରିବା ଦରକାର । ସେହି ସବୁହରା ଶ୍ରେଣୀର ଲୋକଙ୍କୁ କାମ ଦେବା ଓ ସ୍ୱତନ୍ତ୍ର ସୁବିଧାମାନ ଯୋଗାଇ ଦେଇ ସାଧାରଣ ଜୀବନ-ଧାରଣ-ସ୍ତରକୁ ଅବଶ୍ୟ ନେଇ ଆସିବାକୁ ହେବ । ଏହି ଦିଗରେ ଦେଶସାରା ମିଳିତ ଉଦ୍ୟମ ହେବା ଲୋଡ଼ା । ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶର ସରକାରମାନେ ଅତି ନିଃସହାୟ ଓ ନିରୁପାୟ ଶ୍ରେଣୀର ଲୋକଙ୍କ

ଚଳାଚଳ ଦାୟିତ୍ୱ ବହନ କଲେଣି ଏବଂ ସେ ଦଗରେ ଉଦ୍ୟମ ଚଳାଇଲେଣି । କିନ୍ତୁ ଆମ ଦେଶରେ ଏ ଦଗରେ କୌଣସି ଚିନ୍ତା ବା ଉଦ୍ୟମ ଥିଲା ପରି ଜଣାପଡ଼ୁନାହିଁ । ଅବଶ୍ୟ ଏହା ଭାରତ ଭଳି ଗରିବ ଦେଶ ପକ୍ଷରେ ଏକ ଅତି ବିରାଟ ସମସ୍ୟା । କେବଳ ସରକାରୀ ଉଦ୍ୟମଦ୍ୱାରା ଏହି ସମସ୍ୟାର ସମାଧାନ ହେବନାହିଁ । ପ୍ରତ୍ୟେକ ଦେଶବାସୀ ଏହି ମହତ୍ ଲକ୍ଷ୍ୟ ସାଧନ ପାଇଁ ଅଦମ୍ୟ ଉଦ୍ୟମ କରିବା ଉଚିତ; ନ ହେଲେ ଏତେ ବଡ଼ ସମସ୍ୟାର ସମାଧାନ ଆଦୌ ସମ୍ଭବ ନୁହେଁ ।

ଜୀବନଧାରଣର ପ୍ରଣାଳୀ ସରଳ ହେବା ଦ୍ୱାରା ଲୋକମାନେ ସହଜରେ ସ୍ୱାବଲମ୍ବନଶୀଳ ହୋଇ ପାରିବେ । ସେମାନଙ୍କୁ ନିଜର ଜୀବନଯାପନ ପାଇଁ ଆଉ ପରମୁଖାପେକ୍ଷୀ ହେବାକୁ ପଡ଼ିବ ନାହିଁ । ଫଳରେ ସେମାନେ ସ୍ୱାଧୀନ ଓ ନିର୍ଭୀକ ହୋଇ ଉଠିବେ । କିନ୍ତୁ ଜୀବନ ଧାରଣର ପ୍ରଣାଳୀ ଜଟିଳ ହେଲେ ଆମ୍ଭମାନଙ୍କୁ ପର ଉପରେ ବା ରାଷ୍ଟ୍ର ଉପରେ ଅଯଥା ନିର୍ଭର କରିବାକୁ ପଡ଼ିବ । ଫଳରେ ଆମେ ଆମର ସ୍ୱାଧୀନ ମତ ଆଉ ବ୍ୟକ୍ତ କରିପାରିବା ନାହିଁ । ଉଦାହରଣ ସ୍ୱରୂପ ଆମେରିକାର ଲୋକେ ଜଟିଳ ଜୀବନ ଯାପନ କରୁଥିବାରୁ ନିଜର ସ୍ୱାଧୀନତାକୁ ଅନେକ ସମୟରେ ବଳି ଦେଇ ସରକାରୀ ଚାକିରି ପ୍ରତି ଅଧିକ ଆକୃଷ୍ଟ ହୁଅନ୍ତି । ସେହିପରି ମଧ୍ୟ କଳକାରଖାନାର ଶ୍ରମିକମାନେ ଚାକିରି ଯିବା ଭୟରେ ନିଜର ହକ୍ ଦାବୀ ହାସଲ କରିବା ପାଇଁ ଆଗୁଆ ହୋଇ ବାହାରି ପାରନ୍ତି ନାହିଁ । ତେଣୁ ଦେଶରେ ପ୍ରକୃତ ଗଣତନ୍ତ୍ର ଶାସନ ତିଷ୍ଠିବାକୁ ହେଲେ ଲୋକସାଧାରଣ ସ୍ୱାବଲମ୍ବନଶୀଳ ହେବା ଉଚିତ ।

ଅଧିକ ବିଳାସବ୍ୟସନରେ ରହିଲେ ଲୋକର ନୈତିକତାର ଅଧୋଗତି ଘଟେ । ବ୍ୟକ୍ତିଗତ ସ୍ୱାର୍ଥ, ଲାଭ ଓ ବିଷୟ ଲାଳସାରେ ସେ ବୁଡ଼ି ରହେ । ଦେଶ ଓ ଜାତିର ମଙ୍ଗଳ ପାଇଁ ସେ ଆଦୌ ଭାବେ ନାହିଁ । ଠିକ୍ ସେହିପରି ମଧ୍ୟ ଅତି ଗରିବ ଓ ନିଃସହାୟ ଲୋକମାନେ ପେଟଦାଉରେ ଭଲ ମନ୍ଦ ବିଚାର କରନ୍ତି ନାହିଁ । ଖାଦ୍ୟ ପାଇଁ ସେମାନେ ସବୁଥିକି ପ୍ରସ୍ତୁତ ହୋଇ ଯାଆନ୍ତି । ନିଃସହାୟ ଓ ନିରୁପାୟ ଶ୍ରେଣୀର ଲୋକେ ସମାଜରେ କୌଣସି ସୁଯୋଗ ସୁବିଧା ପାଉ ନ ଥିବାରୁ ହିଁ କମ୍ୟୁନିଜମ୍ ଆଡ଼କୁ ଅଧିକ ଢଳିପଡ଼ୁଛନ୍ତି । ତେଣୁ ଧନ ଓ ଦାରିଦ୍ର୍ୟ ଉଭୟ ଦେଶ ପକ୍ଷରେ ଏକ ପ୍ରଧାନ ସମସ୍ୟା । ଏହାର ସୁସମାଧାନ ହେଲେ ଦେଶରେ ଆଶୁ ଶାନ୍ତିପ୍ରତିଷ୍ଠା ସମ୍ଭବ ହେବ ।

ଜୀବନ ଧାରଣର ମାନ ବଢ଼ାଇବାକୁ ହେଲେ ଆମ୍ଭମାନଙ୍କୁ ଆବଶ୍ୟକତାନୁଯାୟୀ ଉତ୍ପାଦନ ବୃଦ୍ଧି କରିବାକୁ ହେବ । କିନ୍ତୁ ଆଜି କାଲି ଲୋକେ ଜୀବନରେ ନାନାବିଧ ଅଭାବ ବୃଦ୍ଧି କଲେ ହେଁ ସେହି ପରିମାଣରେ ନିଜର ଶକ୍ତି ଓ ଦକ୍ଷତାକୁ ବଢ଼ାଇବାକୁ ପ୍ରସ୍ତୁତ ନୁହନ୍ତି । ଲୋକେ ଜୀବନଧାରଣ ପାଇଁ ନାନା ପ୍ରକାର ଜିନିଷ ଲୋଡ଼ୁଥିଲେ ମଧ୍ୟ ସେ ସବୁର ଉତ୍ପାଦନ ପାଇଁ କାମ କରିବାକୁ ପ୍ରସ୍ତୁତ ନୁହନ୍ତି । ଫଳରେ ଲୋକମାନଙ୍କ ମଧ୍ୟରେ ଅଶାନ୍ତି, ଅସନ୍ତୋଷ ବଢ଼ୁଛି ଓ ସେମାନେ କମ୍ୟୁନିଷ୍ଟମାନଙ୍କର ଭଙ୍ଗାରୁଜା ନୀତିକୁ ଅଧିକ ସମର୍ଥନ କରୁଛନ୍ତି । କିନ୍ତୁ ନିଜେ ମୁଣ୍ଡ ଝାଳ ତୁଣ୍ଡରେ ମାରି ଉତ୍ପାଦନ ବୃଦ୍ଧି ନ କରିବା ପର୍ଯ୍ୟନ୍ତ କେବଳ କମ୍ୟୁନିଜମ୍‌ର ହିଂସାନୀତିକୁ ଆଶ୍ରୟ କଲେ କୌଣସି ସୁଫଳ ଫଳିବ ନାହିଁ ।

ଉତ୍ପାଦନ ବୃଦ୍ଧି ପ୍ରତି ଦୃଷ୍ଟି ନ ଦେଇ ଆଜିକାଲି କେତେକ ଲୋକ ଜୀବନଧାରଣର ମାନ ବଢ଼ାଇବା ପାଇଁ ଚେଷ୍ଟା କରୁଥିବାରୁ ଅନ୍ୟ ପକ୍ଷରେ ତାହା ଆଜି କେତେକ ଲୋକଙ୍କର ଅର୍ଥନୈତିକ ଦୁର୍ଗତିର କାରଣ ହୋଇଅଛି । ଅଳ୍ପ ଲୋକଙ୍କର ସମ୍ପଦ ବୃଦ୍ଧି ହିଁ ଅନେକ ଲୋକଙ୍କର ଦାରିଦ୍ର୍ୟର କାରଣ । ବଡଙ୍କର ଅଧା ବଢ଼ିଗଲେ ସାନଙ୍କର ବଟତି ପରି ଏହା ସମାଜରେ କାମ କରେ । ତେଣୁ ଏ ପ୍ରକାରେ ଜୀବନଧାରଣମାନ ନାମରେ ପରୋକ୍ଷ-ଶୋଷଣକୁ କୌଣସିମତେ ପ୍ରଶ୍ରୟ ଦିଆଯାଇ ନ ପାରେ । ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଉପରକୁ ପ୍ରତ୍ୟେକ ଲୋକର ଜୀବନ ଧାରଣରମାନ ବଢ଼ାଇବା ପାଇଁ ଗାନ୍ଧିଜୀ ଚାହୁଁଥିଲେ । ଏହି ମାନ ବୃଦ୍ଧି ଅଳ୍ପ ଲୋକଙ୍କ ପାଇଁ କେବେ ଉଦ୍ଦିଷ୍ଟ ନୁହେଁ ।

ଆମ୍ଭେମାନେ ଜୀବନଧାରଣର ମାନ (Standard of living) ବୃଦ୍ଧି କରିବାକୁ ନ ଯାଇ ଜୀବନର ମାନକୁ (Standard of life) ବୃଦ୍ଧି କରିବାକୁ ଚେଷ୍ଟା କରିବା ଉଚିତ । ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା ଏଥିପାଇଁ ଏକମାତ୍ର ଉପାୟ । ଏହାଦ୍ୱାରା ଦେଶରେ ଉନ୍ନତ ଜୀବନଯାପନ ସମ୍ଭବପର ।

## ଲୋକଙ୍କର ଆୟ

ମୁଣ୍ଡପିଛା ବାର୍ଷିକ ଆୟ ଆମେରିକାରେ ୬୯୦୨, ବ୍ରିଟେନ୍‌ରେ ୩୬୭୨, ଫ୍ରାନ୍‌ସରେ ୨୨୮୯, ଜର୍ମାନୀରେ ୧୫୨୦, ରୁଷିଆରେ ୧୪୬୩ ଟଙ୍କା ହୋଇଥିବା ସ୍ଥଳେ ଭାରତରେ ମୋଟେ ୨୬୦ ଟଙ୍କା । ଭାରତର ବିଭିନ୍ନ ପ୍ରଦେଶମାନଙ୍କରେ ଓଡ଼ିଶାର ଆୟ ପୁଣି ସବୁଠାରୁ କମ୍ । ଜଣେ ଓଡ଼ିଶାବାସୀର ହାରାହାରି

ବାର୍ଷିକ ଆୟ ୭୦ଟଙ୍କା ହେବ । ଏହି ହିସାବରୁ ଆମଦେଶ ଲୋକଙ୍କର ଅର୍ଥନୈତିକ ଦୁର୍ଗତି ସମ୍ପର୍କରେ ସ୍ପଷ୍ଟ ଧାରଣା ଜାତ ହୁଏ ।

ଲୋକଙ୍କ ସକାଶେ ଉପଯୁକ୍ତ ସୁଯୋଗ ସୁବିଧାର ଅଭାବ ହିଁ ଆମ ଜାତିର ଦାରିଦ୍ର୍ୟର ଏକ ପ୍ରଧାନ କାରଣ । ଆମେ ସାଧାରଣତଃ ସଂସ୍କୃତ ପଦାର୍ଥ ଆମଦାନି କରୁ ଓ କଞ୍ଚାମାଲ ବିଦେଶକୁ ରପ୍ତାନି କରୁ । କଞ୍ଚାମାଲକୁ ବ୍ୟବହାରୋପଯୋଗୀ କରିବାର କାର୍ଯ୍ୟହିଁ ଲାଭଜନକ । କାରଣ ଏହା ଅନେକ ଲୋକଙ୍କୁ କାମ ଯୋଗାଇ ଦିଏ । କିନ୍ତୁ ଆମ ଦେଶର କଞ୍ଚାମାଲକୁ ବ୍ୟବହାର ଉପଯୋଗୀ କରିବା ପାଇଁ କୁଟୀରଶିଳ୍ପର ଆଶ୍ରୟ ନିଆ ନ ଯାଇ ବିଦେଶକୁ ବହୁଳ ଭାବରେ ରପ୍ତାନି କରାଯାଉ ଥିବାରୁ ଦେଶରେ ବେକାର-ସମସ୍ୟା ତୀବ୍ର ହୋଇ ଉଠୁଛି । ଲୋକେ ଯଥାଯଥ ଭାବରେ କାମ ପାଇପାରୁ ନ ଥିବାରୁ ସେମାନଙ୍କର କ୍ରୟଶକ୍ତି କମିଯାଉଛି । ଆଉ ମଧ୍ୟ ବହୁଳ ଭାବରେ ବିଦେଶରୁ ଆମଦାନି ହୋଇ ଆସୁଥିବା ସଂସ୍କୃତ ପଦାର୍ଥ ଉପରେ ନିର୍ଭର କରିବା ଦ୍ୱାରା ଆମଦେଶର ଧନସମ୍ପତ୍ତି ଶୋଷିତ ହୋଇ ଅନ୍ୟ ଦେଶକୁ ଚାଲିଯାଉଛି । ଉଦାହରଣ ସ୍ୱରୂପ ଆମେ ଭାରତୀୟ ସାଇକଲ ଖରିଦ ନ କରି ବିଦେଶୀ ସାଇକଲ ଖରିଦ କରିବା ଅର୍ଥ ସେହି ମୂଲ୍ୟର କଞ୍ଚାମାଲ ଆମ ଦେଶରୁ ବିଦେଶକୁ ଚାଲି ହୋଇଯିବ । ଏଥିପ୍ରତି ସରକାର ତଥା ଲୋକସାଧାରଣ ସତର୍କ ହେବା ସଙ୍ଗେ ସଙ୍ଗେ ଆମଦେଶର କଞ୍ଚାମାଲ ଯେପରି ଦେଶ ଶିଳ୍ପଦ୍ୱାରା ବ୍ୟବହାରୋପଯୋଗୀ ହୋଇପାରିବ, ସେଥି-ପାଇଁ ଲାଗିପଡ଼ିବାକୁ ହେବ । ଆମ ଶିକ୍ଷାପଦ୍ଧତି ମଧ୍ୟ ଏହି ଦୃଷ୍ଟିରୁ ବଦଳିବା ଆବଶ୍ୟକ ।

ଆମଦେଶ ପାଇଁ ଲୋକସଂଖ୍ୟା ଦୃଷ୍ଟିରୁ ଆଭ୍ୟନ୍ତରୀଣ ବଜାରର ବେଶ୍ ସୁବିଧା ରହିଛି । ଆମକୁ ଶିଳ୍ପଜାତ ଦ୍ରବ୍ୟ ରପ୍ତାନୀ କରିବା ପାଇଁ ବିଦେଶ ଉପରେ ନିର୍ଭର କରିବାକୁ ସେତେ ପଡ଼ିବ ନାହିଁ । ତେଣୁ ବହିର୍ବାଣିଜ୍ୟ ବନ୍ଦ କରି ଦେଇ ଲୋକଙ୍କ ବୃଦ୍ଧିବା ଦୃଷ୍ଟିରୁ କଞ୍ଚାମାଲ ଓ ସଂପୃକ୍ତ ପଦାର୍ଥର ଉତ୍ପାଦନ ପ୍ରତି ଜାତୀୟ ଉଦ୍ୟମ ହେବା ଦରକାର । ଏହି ଉଦ୍ୟମ ସଫଳ ହେଲେ ଆମଲୋକଙ୍କର ଦାରିଦ୍ର୍ୟ ଓ ଦୁର୍ଗତି ଲୋପ ପାଇବ ।

ବର୍ତ୍ତମାନ ଅବସ୍ଥାରେ ଜାତୀୟ ସଞ୍ଚୟ ଯୋଜନା ଗୁଡ଼ିକରେ ବଳକା ଟଙ୍କାକୁ କୃଷି ଓ କୁଟୀରଶିଳ୍ପର ବିକାଶରେ ବିନିଯୋଗ କରିପାରିଲେ ହିଁ ଦେଶର ଅର୍ଥନୈତିକ ମୁକ୍ତି ସମ୍ଭବ ହେବ । ଏଥିପାଇଁ ସାଧାସିଧା ଜୀବନଯାପନ କରିବା ସଙ୍ଗେ ସଙ୍ଗେ ଦେଶର ଉତ୍ପାଦନ ବୃଦ୍ଧି ପାଇଁ ଲୋକମାନଙ୍କୁ ପ୍ରାଣପଣେ ଖଟିବାକୁ ହେବ । ବ୍ୟାଙ୍କ ଓ ବୀମା ବ୍ୟବସାୟର ମଧ୍ୟ ସାମାଜି- କରଣ ହେବା ଦରକାର । ଫଳରେ ଦେଶର ଅର୍ଥନୈତିକ ସଚ୍ଛଳତା ପାଇଁ ଟଙ୍କାର ଅଭାବ ହେବନାହିଁ ଓ ଲୋକମାନେ ବଢ଼ନ୍ତା ଉତ୍ପାଦନ ବୃଦ୍ଧି କର କାର୍ଯ୍ୟରେ ଲାଗି ନିଜ ନିଜର ଆୟ ବଢ଼ାଇବା ପାଇଁ ସୁଯୋଗ ସୁବିଧା ପାଇପାରିବେ ।

## ଆଦାନପ୍ରଦାନ

ପୂର୍ବେ ଆମ ଦେଶରେ ଜିନିଷପତ୍ରର ଆଦାନପ୍ରଦାନ ସୂତ୍ରରେ ସବୁ ରକମର କାରବାର ହେଉଥିଲା । ସେତେବେଳେ ଜିନିଷପତ୍ର ଅଦଳବଦଳ କରିବା ପାଇଁ କୌଣସି ମାଧ୍ୟମର ଆବଶ୍ୟକତା ନ ଥିଲା ; କିନ୍ତୁ ବର୍ତ୍ତମାନ ସମୟର ଗତି ବଦଳିଯାଇଛି । ଆଜିମ

ଆଜି ପୂର୍ବପରି ସରଳ ଜୀବନଯାପନ କରୁ ନଥାଉଁ । ଆମେ ବର୍ତ୍ତମାନ ଜୀବନଧାରଣ ପାଇଁ ପୃଥିବୀର ବହୁ ଦୂର ଅଞ୍ଚଳ ଉପରେ ନିର୍ଭର କରୁଥାଉଁ; ତେଣୁ ଜିନିଷପତ୍ରକୁ ଅଦଳବଦଳ କରି ଚଳିବା ବର୍ତ୍ତମାନ ସମୟରେ ସେତେ ସମ୍ଭବ ନୁହେଁ ।

ଜିନିଷପତ୍ରର ଅଦଳବଦଳ ପାଇଁ ଗୋଟିଏ ମାଧ୍ୟମ ରହିବାରେ ଆମ୍ଭମାନଙ୍କର ଆହୁରି ଏକ ସୁବିଧା ହେଉଛି । ମନେକର, ଜଣେ ଲୋକର ଗୁଡ଼ ବଳକା ରହିଛି । ସେ ତାହା ବିକି ଅନ୍ୟ ଲୋକଠାରୁ ଚାଉଳ କିଣିବାକୁ ଚାହୁଁଛି । କିନ୍ତୁ ଚାଉଳ ଥିବା ଲୋକର ହୁଏତ ଗୁଡ଼ ଦରକାର ହୋଇ ନପାରେ । ଏଭଳି କ୍ଷେତ୍ରରେ ଜିନିଷପତ୍ରର ବିନିମୟ ବ୍ୟବସ୍ଥା ସୁବିଧାଜନକ ନୁହେଁ । ତେଣୁ ବର୍ତ୍ତମାନ ଜିନିଷପତ୍ରର ଅଦଳବଦଳ ପାଇଁ ଟଙ୍କା ଏକ ସୁବିଧାଜନକ ମାଧ୍ୟମ ରୂପେ ଚଳୁଛି ।

ଜିନିଷର ଅଦଳବଦଳ ପାଇଁ ଟଙ୍କା ଏକ ମାଧ୍ୟମ ବା ଉପାୟ । କିନ୍ତୁ ବର୍ତ୍ତମାନ ଜିନିଷପତ୍ରର ଅଦଳବଦଳ ପାଇଁ ଏହା ଏକ ଉପାୟ ନ ହୋଇ ଆମ ଜୀବନର ପ୍ରଧାନ ଲକ୍ଷ୍ୟ ହୋଇପଡ଼ିଛି । ଟଙ୍କା ସାଇତି ରଖିବାକୁ ଆମେ ଜୀବନର ପ୍ରଧାନ କାମ ବୋଲି ଭାବୁଥାଉଁ । ତେଣୁ ମୁଦ୍ରାର ଅର୍ଥନୀତି ସବୁ ରକମ ସାମାଜିକ ଦୁର୍ନୀତିର କାରଣ ହୋଇଅଛି । ଏହି ବ୍ୟବସ୍ଥା ଶୀଘ୍ର ବଦଳିବା ଉଚିତ ।

ବର୍ତ୍ତମାନ ଅବସ୍ଥାରେ ଜିନିଷପତ୍ରର ବିନିମୟ ବ୍ୟବସ୍ଥାରୁ ଲାଭ ଉଠାଇବା ସମ୍ଭବ ହେଉଛି । କେବଳ ଜିନିଷପତ୍ର ଏ ହାତରେ କିଣି ସେ ହାତରେ ଚଢ଼ା ଦରରେ ବିକିଲେ ଯଥେଷ୍ଟ

ଲାଭ ମିଳୁଛି । ତେଣୁ ଆଜକାଲି ଅନେକ ଲୋକ ବାଣିଜ୍ୟ-ବ୍ୟବସାୟରେ ହାତ ଦେଇ ଧନୀ ହେବାରେ ଲାଗି ପଡ଼ୁଛନ୍ତି । ଏହିପରି କ୍ଷେତ୍ରରେ ମୁଦ୍ରାର ଅର୍ଥନୀତି ଦେଶରେ ଶୋଷକ ଦଳ ସୃଷ୍ଟି କରିବାରେ ସହାୟକ ହେଉଛି; ତେଣୁ ଯେତେ ଦୂର ସମ୍ଭବ, ଆମ୍ଭମାନଙ୍କୁ ଜିନିଷପତ୍ରର ଅଦଳବଦଳ ବ୍ୟବସ୍ଥା ଉପରେ ହିଁ ନିର୍ଭର କରିବାକୁ ପଡ଼ିବ ।

ଜିନିଷର ଅଦଳବଦଳ ବ୍ୟବସ୍ଥାଦ୍ୱାରା ଜାତୀୟ ଆୟର ବୃଦ୍ଧି ଘଟେ । ଗୋଟିଏ ଗରିବ ଚାଷୀଠାରୁ ଟଙ୍କାଟିଏ ଖଜଣାସ୍ୱରୂପ ଆଣି ଜଣେ ବଡ଼ ସରକାରୀ ଚାକରିଆକୁ ଦରମା ଦେବାରେ ସେହି ଟଙ୍କାଟିର ଯଥାର୍ଥ ମୂଲ୍ୟ କମିଯାଏ । କାରଣ ଜଣେ ଉଚ୍ଚ-ପଦସ୍ଥ ସରକାରୀ ଚାକରିଆ ପ୍ରତି ଗୋଟିଏ ଟଙ୍କାର ମୂଲ୍ୟ କିଛି ନୁହେଁ ବୋଲି କହିଲେ ଚଳେ; କିନ୍ତୁ ସରକାର ଯଦି ଜିନିଷ ଆକାରରେ ପାରିଶ୍ରମିକ ଦିଅନ୍ତି, ତା' ହେଲେ କରଦାତା ଓ କର୍ମଚାରୀ ଉଭୟେ ଉପକୃତ ହୁଅନ୍ତି । ଉଦାହରଣ ସ୍ୱରୂପ ଉଚ୍ଚପଦସ୍ଥ କର୍ମଚାରୀ ପକ୍ଷରେ ଟଙ୍କାଟିଏ ଅପେକ୍ଷା ଟଙ୍କାକର ଜିନିଷ ଅଧିକ ମୂଲ୍ୟବାନ ବିବେଚିତ ହେବ । କାରଣ ସେ ସହରରେ ରହି ଶସ୍ତାରେ ଜିନିଷପତ୍ର ପାଇବା ସମ୍ଭବ ନୁହେଁ । କରଦାତା ମଧ୍ୟ ସରକାରଙ୍କୁ ଖଜଣା ଦେବା ସକାଶେ ବଡ଼ ହଇରାଣ ହୁଏ; କାରଣ ତାକୁ ଟଙ୍କା ଆକାରରେ ହିଁ ଖଜଣା ଦେବାକୁ ପଡ଼େ । ତେଣୁ ସେ ତାର ଜିନିଷ ବିକି ଟଙ୍କା ଆଣିବା ପାଇଁ ବାରବାର ଶୁଣ୍ଢୀପିଣ୍ଡା ହୁଏ । ଟଙ୍କା ଥିବା ଲୋକ କରଦାତାର ଏହି ଅବସ୍ଥାର ସୁଯୋଗ ନେଇ ଜିନିଷ ରଖିବାକୁ ପ୍ରଥମେ ଅମଙ୍ଗ ହୁଏ ଓ ପରେ ଶସ୍ତା ଦରରେ ତାକୁ ରଖେ; ଏଣୁ ଏହା ଫଳରେ

ଗରିବ କରଦାତା ଅତିଶୟ ବହୁତ ଦହଗଞ୍ଜ ହୁଏ । ଏଦ୍ୱାରା ମଧ୍ୟ କୃଷିଜାତ ଜିନିଷର ଦର କମିଯାଏ । ଏହି ବିଚାରଦୃଷ୍ଟିରୁ ସରକାର ଜିନିଷ ଆକାରରେ ଜମିର ଖଜଣା ଆଦାୟ କରିବାର ବ୍ୟବସ୍ଥା କରିବା ଉଚିତ ।

ଟଙ୍କା ଜମେଇ ରଖିବା ଅର୍ଥ ଲୋକଙ୍କର କ୍ରୟଶକ୍ତିକୁ ଅଟକାଇ ଦେବା; ତେଣୁ ପୁଞ୍ଜିପତିମାନେ ହିଁ ଅନେକ ଲୋକଙ୍କର କ୍ରୟଶକ୍ତିକୁ ଏକଜୁଟିଆ ଅଧିକାର କରି ନେଇ ସେମାନଙ୍କର ଅର୍ଥନୈତିକ ସ୍ୱାଧୀନତା ଅପହରଣ କରନ୍ତି । ଫଳରେ ଲୋକମାନେ ସେମାନଙ୍କର ଆବଶ୍ୟକତାନୁଯାୟୀ ଜିନିଷପତ୍ର କିଣିବାର ସୁବିଧାରୁ ବଞ୍ଚିତ ହୁଅନ୍ତି । ମୁଦ୍ରା ଅର୍ଥନୀତି ଦ୍ୱାରା ମଧ୍ୟ ଗୋଟିଏ ଅଞ୍ଚଳର କ୍ରୟଶକ୍ତି ଅନ୍ୟ ଅଞ୍ଚଳକୁ ସ୍ଥାନାନ୍ତରିତ ହୋଇଯାଏ; କିନ୍ତୁ ଜିନିଷପତ୍ରର ଅଦଳବଦଳ ବ୍ୟବସ୍ଥା ଦ୍ୱାରା ଏହି ଅସୁବିଧା ସହଜରେ ଦୂର ହୁଏ; କାରଣ ଟଙ୍କା ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଚାଲିଯିବା ଯେତେ ସହଜ, ଜିନିଷ-ପତ୍ର ଯିବା ସେତେ ସହଜ ନୁହେଁ ।

ସରକାର ମଧ୍ୟ ଗାଁଗହଳରୁ ଖଜଣା ଆକାରରେ ଟଙ୍କା ଆଣି ସହରମାନଙ୍କରେ ସେଥିର ଅଧିକ ଭାଗ ଖର୍ଚ୍ଚ କରନ୍ତି । ଏଦ୍ୱାରା ସହରର ଲୋକ ଦିନକୁ ଦିନ ଧନୀ ଓ ମଫସଲର ଲୋକ ଗରିବ ହୋଇ ଉଠୁଛନ୍ତି; କିନ୍ତୁ ଜିନିଷ ଆକାରରେ ଖଜଣା ଆଦାୟ କରାଗଲେ ଟଙ୍କା ପରି ତାର କେନ୍ଦ୍ରୀକରଣ ସେତେ ସମ୍ଭବ ହେବନାହିଁ; ତେଣୁ ମଫସଲର ଜିନିଷ ମଫସଲରେ ହିଁ ଖର୍ଚ୍ଚ କରାଯିବ ।

ଜମିର ଉତ୍ପାଦନ ପରିମାଣର କିଛି ଅଂଶ ଖଜଣା ସ୍ୱରୂପ ଆଦାୟ କରାଗଲେ ଜାତୀୟ ଉତ୍ପାଦନ-ବୃଦ୍ଧି ସହଜ ହୋଇ-ଉଠିବ । ଫଳରେ ଦେଶରୁ ଖାଦ୍ୟସଙ୍କଟ ଦୂର ହୋଇପାରିବ । କାରଣ ସରକାରଙ୍କ ପ୍ରାପ୍ୟ ଜିନିଷ ଦେବା ସକାଶେ ଲୋକମାନେ ଜମିର ଉତ୍ପାଦନ ବୃଦ୍ଧି କରିବା ପାଇଁ ଲାଗିପଡ଼ିବେ; କିନ୍ତୁ ଆଜି କାଲି ଅନେକ ଜମିଦାର ଜମି ପଡ଼ିଆ ପକାଇ ତା'ର ଖଜଣା ସ୍ୱରୂପ ଟଙ୍କା କେଇଟା ଦେଇ ଦେଉଛନ୍ତି ; ଫଳରେ ପଡ଼ିଆ ଜମିରୁ କପର କିଛି ଉତ୍ପାଦନ କରାଯିବ, ସେଥିପାଇଁ ସେମାନେ ଆଦୌ ଭାବୁ ନାହାନ୍ତି । କାରଣ ପାଖରେ ଅଜସ୍ର ଟଙ୍କା ଥିବାରୁ ଅଧିକ ଟଙ୍କା ଦେଇ ଦେବାକୁ ସେମାନଙ୍କୁ ବାଧୁନାହିଁ । କିନ୍ତୁ ଜିନିଷ ଆକାରରେ ଖଜଣା ଦେବାକୁ ହେଲେ ସେମାନେ କଦାପି ଜମି ପଡ଼ିଆ ପକାଇବାକୁ ଚାହିଁବେ ନାହିଁ ; ବରଂ ଏହାଦ୍ୱାରା ସେମାନେ ଜମିର ଉତ୍ପାଦନ ପରିମାଣ ବୃଦ୍ଧି କରିବା ପାଇଁ ମନ ପ୍ରାଣ ଢାଳିଦେବେ । ଏ ଦିଗରେ ଚୀନ୍‌ର ଆଦର୍ଶ ବାସ୍ତବିକ ଗ୍ରହଣୀୟ ।

ଗାନ୍ଧିଜୀଙ୍କର ସ୍ୱାବଲମ୍ବୀ ଅଞ୍ଚଳଗଠନର ସ୍ୱପ୍ନ ସଫଳ ହେଲେ ମୁଦ୍ରା-ଅର୍ଥନୀତିର କୁପ୍ରଭାବକୁ ସହଜରେ ରୋକି ଦିଆଯାଇ ପାରିବ । ଜିନିଷପତ୍ରର ଆଦାନପ୍ରଦାନ ବ୍ୟବସ୍ଥା ମୁଦ୍ରାର ଭାବରେ ସ୍ଥିର ହୋଇପାରିବ; କିନ୍ତୁ ଏହାଦ୍ୱାରା ଆମ୍ଭମାନଙ୍କ ଜୀବନଧାରଣ ପାଇଁ ଆମର ଅଞ୍ଚଳ ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ଆମ୍ଭେମାନେ ଯଦି ଆଞ୍ଚଳିକ ସ୍ୱାବଲମ୍ବନଶୀଳତା ହାସଲ କରିପାରିବା, ତାହାହେଲେ ଦେଶରୁ ଶୋଷଣ ଅନେକ ପରିମାଣରେ ଦୂର ହୋଇପାରିବ । ଲୋକମାନେ

କେବଳ ଟଙ୍କା ସାଇତି ରଖିବାକୁ ଜୀବନର ପ୍ରଧାନ ଲକ୍ଷ୍ୟ ବୋଲି ଆଉ ବିଚାରିବେ ନାହିଁ । ସମାଜରେ ମଧ୍ୟ ଲୋକ-ସାଧାରଣଙ୍କର ନିସ୍ୱଶକ୍ତିକୁ ଅଟକାଇ ରଖିବା ବିରୁଦ୍ଧରେ ଆନ୍ଦୋଳନ ହେବା ଉଚିତ; କିନ୍ତୁ ଦୁଃଖର ବିଷୟ ଯେ ସମାଜରେ ଯେଉଁମାନେ ଟଙ୍କାର ଏକଚାଟିଆ ଅଧିକାରୀ, ସେମାନେ ସାମାଜିକ ଶୋଷଣର ପଥ ପରିଷ୍କାର କରୁଥିଲେ ମଧ୍ୟ ପୂଜାର ପାତ୍ର ହୋଇଛନ୍ତି । ଏହି ସାମାଜିକ ବ୍ୟବସ୍ଥା ଶୀଘ୍ର ବଦଳିବା ଦରକାର ।

ଟଙ୍କାର ବ୍ୟବହାରକୁ ଯେ ପୂରାପୂରି ବନ୍ଦ କରିଦେବାକୁ ହେବ ତାହା ନୁହେଁ, ଟଙ୍କାର ମାଧ୍ୟମରେ ହିଁ ବିଭିନ୍ନ ଜିନିଷର ମୂଲ୍ୟ ନିର୍ଦ୍ଧାରଣ କରିବାକୁ ହେବ; କିନ୍ତୁ ଏହାର ଗତିକୁ ବହୁ ପରିମାଣରେ ନିୟନ୍ତ୍ରଣ କରାଯିବା ଉଚିତ । ଜିନିଷପତ୍ରର ଅଦଳବଦଳ ବ୍ୟବସ୍ଥା ହିଁ ଏହି ଲକ୍ଷ୍ୟସାଧନର ପ୍ରଧାନ ଉପାୟ । ଆଜି ମଧ୍ୟ ଏହି ଅଦଳବଦଳ ବ୍ୟବସ୍ଥାର ଉପଯୋଗ କରିବାକୁ ହେଲେ ପ୍ରତି ଗାଁରେ ସମବାୟ ସଂଗଠନ ସବୁ ଗଢ଼ିବାକୁ ହେବ । ଗ୍ରାମବାସୀମାନଙ୍କର ପ୍ରତିନିଧିମାନେ ହିଁ ଏହି ସଂଗଠନର ପରିଚାଳନା ଭାର ଗ୍ରହଣ କରିବେ । ସେମାନେ ଗ୍ରାମବାସୀମାନଙ୍କଠାରୁ ବଳକା ଜିନିଷ ନେଇ ଶସ୍ୟ-ଗୋଲାମାନଙ୍କରେ ରଖିବେ ଓ ସେହି ଅନୁପାତରେ ସେମାନଙ୍କର ପ୍ରୟୋଜନୀୟ ଅନ୍ୟାନ୍ୟ ଜିନିଷ ଯୋଗାଇବେ । ଟଙ୍କାର ଅବାଧ ପ୍ରଚଳନକୁ ବନ୍ଦ କରିଦେଇ ସମବାୟ ସଂଗଠନ ଜରିଆରେ ଜିନିଷପତ୍ରର ଅଦଳବଦଳ ବ୍ୟବସ୍ଥା କରାଯାଇପାରିଲେ ଦେଶର ଅର୍ଥନୈତିକ ମୁକ୍ତି ସମ୍ଭବ ହୋଇପାରେ ।

ଏହାଦ୍ୱାରା ଯେଉଁ ଲୋକର ଉତ୍ପାଦନରେ କୌଣସି ଭାଗ ନାହିଁ, ସେ କେବଳ ଟଙ୍କା ସାଇତି ରଖି ଜିନଷପତ୍ରକୁ ଏକଚାଟିଆ ଅଧିକାର କରିନେବାର ସୁବିଧା ପାଇପାରିବ ନାହିଁ। ଫଳରେ ସମାଜରେ ଅନୁତ୍ପାଦକ ଓ ଶୋଷକ ଶ୍ରେଣୀର ଲୋକେ ବାଧ୍ୟ ହୋଇ ଉତ୍ପାଦନ ବୃଦ୍ଧିରେ ଭାଗୀଦାର ହେବେ। କ୍ୱଚିତ୍ ଟଙ୍କାର ବ୍ୟବହାର କରାଯିବ। କେବଳ ସରକାର ଏହାର ବ୍ୟବହାର କରିପାରିବେ; ସରକାରୀ କର୍ମଚାରୀମାନଙ୍କୁ ଜିନିଷ-ପତ୍ର ଓ ଅଳ୍ପ କିଛି କିଛି ଟଙ୍କା ପାରିଶ୍ରମିକ ସ୍ୱରୂପ ଦେବାକୁ ହେବ। ଭାରତ ଭଳି ପଲ୍ଲୀମୟ ଗରିବ ଦେଶ ପକ୍ଷରେ ଜିନିଷ-ପତ୍ରର ଅଦଳବଦଳ ବ୍ୟବସ୍ଥା ଅମୃତ ଭଳି କାମ ଦେବ।

## ଗ୍ରାହକର କର୍ତ୍ତବ୍ୟ

ଗ୍ରାହକ ହିସାବରେ ପ୍ରତ୍ୟେକ ଲୋକର କିଛି ନା କିଛି ଜାତୀୟ କର୍ତ୍ତବ୍ୟ ରହିଛି। ଆମେ ଯଦି ଆମର ପ୍ରୟୋଜନୀୟ ଜିନିଷପତ୍ର:ଖାମ୍ ଖିଆଲି ଭାବରେ ଖରିଦ୍ ନକରି ବୁଝିବିଚାରି କରିବା, ତା'ହେଲେ ଦେଶର ବେକାର-ସମାସ୍ୟା ଦୂର ହୋଇ-ପାରିବ, ଅର୍ଥର ସୁସମ ବଣ୍ଟନ ସମ୍ଭବ ହେବ ଏବଂ ଦେଶର କଳା ଓ ଶିଳ୍ପକୃତିର ବିକାଶ ହୋଇପାରିବ।

ଜାତୀୟତା ଦୃଷ୍ଟିରୁ ଅଯଥା ବିଦେଶୀ ଜିନିଷ କିଣିବା ଆମ ପକ୍ଷରେ ଠିକ୍ ନୁହେଁ; କାରଣ ଏହାଦ୍ୱାରା ଆମ ଦେଶର ଅର୍ଥ ବିଦେଶକୁ ଚାଲିଯିବ ଓ ଆମ ଲୋକଙ୍କର ଜିନିଷ ବିକ୍ରୀ ନ ହୋଇପାରିବା ଫଳରେ ଦେଶରେ ବେକାରସମସ୍ୟା

ଉତ୍କଟ ହୋଇଉଠିବ; ତେଣୁ ସ୍ୱାଧୀନ ଦେଶର ଲୋକେ ସେମାନଙ୍କ ଦେଶର ଜିନିଷକୁ ଆଗ୍ରହର ସହିତ କିଣନ୍ତି; କିନ୍ତୁ ଭାରତ ସ୍ୱାଧୀନ ହୋଇଥିଲେ ମଧ୍ୟ ଆମେ ଜାତୀୟତା ଦୃଷ୍ଟିରୁ ବିଚାର ନ କରି ଦି'ପଇସା ଲାଭ କରିବାର ସଂକୀର୍ଣ୍ଣ ସ୍ୱାର୍ଥ ଦୃଷ୍ଟିରୁ ହିଁ ଜିନିଷପତ୍ର ପସନ୍ଦ କରୁ । ପ୍ରକୃତ କଥା କହିବାକୁ ଗଲେ ଆମ ଦେଶତିଆରି ଜିନିଷ ପ୍ରତି ଆମ ନିଜର ଏକ ପ୍ରକାର ଘୃଣାଭାବ ରହିଛି । ଆମ୍ଭେମାନେ ସାଧାରଣତଃ ଅନ୍ୟ ଦେଶର ଜିନିଷକୁ ଆମ ଜିନିଷ ଅପେକ୍ଷା ଅଧିକ ମୂଲ୍ୟ ଦେଉ । ସ୍ୱାଧୀନ ଜାତି ହିସାବରେ ଏହା ଆମ୍ଭମାନଙ୍କ ପକ୍ଷରେ ଅତି ଲଜ୍ଜାର କଥା । ଅବଶ୍ୟ ଉତ୍ପାଦିତ ଦ୍ରବ୍ୟକୁ ଉନ୍ନତ ଧରଣର କରିବା ଦିଗରେ ଜାତୀୟ ଉଦ୍ୟମ ହେବା ଲୋଡ଼ା । କାରଣ ଆମ ଦେଶର ଜିନିସ ସାଧାରଣତଃ ବିଦେଶୀ ବଜାରରେ ଆଦୃତ ହେଉନାହିଁ । ଆମ ଲୋକେ ଜାତୀୟତା ଦୃଷ୍ଟିରୁ ବିଚାର ନ କରି କେବଳ ବ୍ୟକ୍ତିଗତ ଲାଭାଲାଭ ଦୃଷ୍ଟିରୁ ହିଁ ଜିନିସପତ୍ର ତିଆରି କରନ୍ତି । ଲାଭଖୋର ମନୋବୃତ୍ତି ଓ ଜାତୀୟ ଦାରିଦ୍ର୍ୟ ହେତୁ ଆମର ଉତ୍ପାଦନ ଉଚ୍ଚ ଦରର ହୋଇପାରେ ନାହିଁ; ଫଳରେ ଏହା ମ ନିଜ ଦେଶରେ ମଧ୍ୟ ମନୋମତ ହୋଇପାରେ ନାହିଁ । ଏହା ବାସ୍ତବିକ୍ ଏକ ଜାତୀୟ-ସମସ୍ୟା ।

ନିଜ ଦେଶର କଳକାରଖାନା ତିଆରି ଜିନିସ ମଧ୍ୟ ଆମ୍ଭେମାନେ କିଣିବା ଉଚିତ ନୁହେଁ; କାରଣ ଏହାଦ୍ୱାରା ଆମ ଦେଶର ଅର୍ଥ ବିଦେଶକୁ ନ ଗଲେ ବି ଶୋଷକ ଓ ପୁଞ୍ଜିପତି-ମାନଙ୍କ ହାତକୁ ଚାଲିଯାଏ । ଫଳରେ ଧନୀ ଅଧିକ ଧନୀ

ଗରିବ ଅଧିକ ଗରିବ ହୁଏ; ତେଣୁ ବେକାରସମସ୍ୟାର ମଧ୍ୟ ସମାଧାନ ହୋଇପାରେ ନାହିଁ । ଦେଶରେ ଅର୍ଥନୈତିକ ସାମ୍ୟ ପ୍ରତିଷ୍ଠା କରିବାକୁ ହେଲେ ବରଂ ଅଧିକ ଦାମ୍ ଦେଇ ଆମ୍ଭେମାନେ କୁଟୀରଶିଳ୍ପଜାତ ଜିନିଷ କିଣିବା ଉଚିତ ।

ଗାଁଗହଳର ଗରିବ ଲୋକେ ଅବସର ସମୟରେ ଅତି ସୁନ୍ଦର ସୁନ୍ଦର ବ୍ୟବହାର୍ଯ୍ୟ ଜିନିଷ ତିଆରି କରନ୍ତି । ଦେଶରେ କଳାକୌଶଳର ବିକାଶ ଦୃଷ୍ଟିରୁ ଆମେ ସେସବୁ ଜିନିଷ ବରଂ ଅଧିକ ଦାମ୍ ଦେଇ କିଣିବା ଉଚିତ । କିନ୍ତୁ ଆମେ ତାହା ନ କରି ମନଭୁଲାଣିଆ ଓ ଚହଟଚକ୍‌ଚକଣ କଳଜିନିଷକୁ ଅଧିକ ପସନ୍ଦ କରୁ । ଏପରି ନ କରିବା ପାଇଁ ଆମ୍ଭେମାନେ ଆମ ମାତୃଭୂମି ନାମରେ ଶପଥ କରିବା ଉଚିତ ।

କୌଣସି ହାତତିଆରି ଜିନିଷ ଖରିଦ୍ କରିବା ବେଳେ ଶିଳ୍ପୀର ଜୀବନଧାରଣ ପ୍ରତି ଦୃଷ୍ଟି ଦେଇ ଆମେ ତାହାର ମୂଲ୍ୟ ନିର୍ଦ୍ଧାରଣ କରିବା ଉଚିତ । ଶିଳ୍ପୀର ଚଳାଚଳ ଦୃଷ୍ଟିରୁ ଯଦି ଜିନିଷର ଦାମ୍ ଠିକ୍ କରି ନ ଯାଏ, ତା' ହେଲେ ସେ ସେହି ଶିଳ୍ପରଚନା ପ୍ରତି ସ୍ୱଭାବତଃ ଆଗ୍ରହପ୍ରକାଶ କରିବ ନାହିଁ । ଏହାର ଫଳରେ ହିଁ ଆମଦେଶର ହସ୍ତଶିଳ୍ପ ଆଜି ଅର୍ଦ୍ଧମୃତ । ଶିଳ୍ପୀକୁ ତାହାର କାର୍ଯ୍ୟରେ ଉତ୍ସାହିତ କରିବାକୁ ହେଲେ ତାକୁ ତାହାର ଜିନିଷ ପାଇଁ ଉଚିତ ମୂଲ୍ୟ ଦେବାକୁ ହେବ । ଏ ଦିଗରେ ଜାତୀୟ-ଉତ୍ସାହ ନଆସିଲେ ହସ୍ତଶିଳ୍ପ କ୍ଷେତ୍ରରେ ନବ ଜୀବନ ସଞ୍ଚାର କରିବା ସମ୍ଭବ ହେବନାହିଁ ।

ବଜାରସଉଦା କରିବା ବା ଅନ୍ୟ କିଛି ଜିନିଷ କିଣିବା ବେଳେ ଆମ୍ଭମାନଙ୍କୁ ଅନେକ ବିଷୟ ବିଚାର କରିବାକୁ ହେବ । ବାସ୍ତବିକ୍ ଏହା ଅତି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ଘରଣୀମାନେ ଜିନିଷପତ୍ର କିଣିବା ବେଳେ କେବଳ ସଙ୍କୀର୍ଣ୍ଣ ସ୍ୱାର୍ଥଦୃଷ୍ଟିରୁ ହିଁ ସବୁକଥା ବିଚାର କରନ୍ତି; କିନ୍ତୁ ଏ ଦିଗରେ ଏକ ନୂଆ ପରମ୍ପରା ସୃଷ୍ଟି କରିବାକୁ ହେବ । ଏଥିପାଇଁ ଲୋକ-ସାଧାରଣଙ୍କୁ ଶିକ୍ଷା ଦିଆଯିବା ଉଚିତ । ବାସ୍ତବିକ୍ ବଜାର-ସଉଦାରୁ ହିଁ ଲୋକଙ୍କର ଦେଶାତ୍ମବୋଧ ସମ୍ପର୍କରେ ସୁସ୍ପଷ୍ଟ ଧାରଣା ଜାତ ହୁଏ ।

———

କଟକ, ସତ୍ୟବାଦୀ ପ୍ରେସରେ ଶ୍ରୀଉଦୟନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ମୁଦ୍ରିତ—୧୯[illegible]

